# ଜଳାତଙ୍କ ରୋଗର ଚିକିତ୍ସା ଓ ପ୍ରତିଷେଧକ ପଦ୍ଧତି



ଡାକ୍ତର ସର୍ବେଶ୍ୱର ସ୍ୱାଇଁ

# ଜଳାତଙ୍କ ରୋଗର ଚିକିତ୍ସା
# ଓ
# ପ୍ରତିଷେଧକ ପଦ୍ଧତି

ଡାକ୍ତର ସର୍ବେଶ୍ୱର ସ୍ୱାଇଁ
ଅବସରପ୍ରାପ୍ତ ଉପନିର୍ଦ୍ଦେଶକ
ପଶୁପାଳନ ଓ ପଶୁଚିକିତ୍ସା ବିଭାଗ, ଓଡ଼ିଶା

ବିଜ୍ଞାନଭାରତୀ
ବାଲୁବଜାର, କଟକ

ପ୍ରଥମ ପ୍ରକାଶ ମେ ୨୦୦୪
ଦ୍ୱିତୀୟ ମୁଦ୍ରଣ ଅକ୍ଟୋବର ୨୦୦୬

ପ୍ରକାଶକ
ବିଜ୍ଞାନଭାରତୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ସଂଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୧୪.୦୦

JALATANKA ROGARA CHIKITSHA
O
PRATISEDHAKA PADDHATI
by Dr Sarbeswar Swain
Published by VigyanBharati Cuttack 753002

# ଅବତରଣିକା

ଡାକ୍ତର ସର୍ବେଶ୍ୱର ସ୍ୱାଇଁଙ୍କ ଲିଖିତ 'ଜଳାତଙ୍କ ରୋଗର ଚିକିତ୍ସା ଓ ପ୍ରତିଷେଧକ ପଦ୍ଧତି' ଶୀର୍ଷକ କ୍ଷୁଦ୍ର ପୁସ୍ତିକାଟିର ପାଣ୍ଡୁଲିପି ଆମୂଳଚୂଳ ପାଠକରି ମନେହେଲା- ଏହା ନିଶ୍ଚିତଭାବେ ପାଠକୀୟ ଆଦୃତି ଲାଭ କରିବ; କାରଣ ଲକ୍ଷଣ ପ୍ରକାଶ ପାଇଲାପରେ 'ଜଳାତଙ୍କ ରୋଗ' ଯେ ମଣିଷପାଇଁ ନିଶ୍ଚିତ ମୃତ୍ୟୁର ବାର୍ତ୍ତାବହ ହୋଇଥାଏ, ଏ କଥା ଅଧିକାଂଶ ଲୋକ ଉଣାଅଧିକେ ଜାଣନ୍ତି ଏବଂ ସେଇଥିପାଇଁ ଏ ରୋଗ ସଂପର୍କିତ ସମ୍ୟକ୍ ସୂଚନା ଓ ସଠିକ ସମୀକ୍ଷା ଆହୁରି ବେଶୀ ଜାଣିବାପାଇଁ ଅନେକ ଉତ୍କଣ୍ଠିତ ହେବେ । ଏ ଦୃଷ୍ଟିରୁ ଡାକ୍ତର ସ୍ୱାଇଁଙ୍କର ଏ ଉଦ୍ୟମ ପ୍ରଶଂସାର୍ହ ତଥା ପ୍ରାସଙ୍ଗିକ ।

ଆମ ଦେଶରେ ପ୍ରତିବର୍ଷ ପ୍ରାୟ ୨୫,୦୦୦ ଲୋକ ପାଗଳାକୁକୁର ଓ ବିଲୁଆ କାମୁଡ଼ା ଯୋଗୁଁ ଜଳାତଙ୍କ ରୋଗରେ ପୀଡ଼ିତ ହୋଇ ମୃତ୍ୟୁବରଣ କରିଥାନ୍ତି । ଜଳାତଙ୍କ ରୋଗ 'ରେବିଜ୍ ଭାଇରସ୍' (Rabies Virus) ନାମକ ଏକ ଭୂତାଣୁ ପ୍ରସୂତ ପ୍ରାଣଘାତୀ ସଂକ୍ରମଣ । ଏ ଭୂତାଣୁ ଆର୍.ଏନ୍.ଏ. (RNA) ସମ୍ବଳିତ, ବନ୍ଧୁକ ଗୋଳା-ସଦୃଶ-ବହନକାରୀ, ମନୁଷ୍ୟେତର ପ୍ରାଣି-ଆଧାରୀ ସୂକ୍ଷ୍ମାତିସୂକ୍ଷ୍ମ ଅଣୁ ଜୀବଟିଏ; କିନ୍ତୁ ମନୁଷ୍ୟ ଓ ମନୁଷ୍ୟେତର ଅନ୍ୟ କେତେକ ପ୍ରାଣୀଙ୍କର କେନ୍ଦ୍ରୀୟ ସ୍ନାୟୁତନ୍ତ୍ରୀରେ ପ୍ରବେଶ କରିବାର ସୁଯୋଗ ପାଇଲାମାତ୍ରେ ଏହା ସେମାନଙ୍କ ପ୍ରାଣହାନି ଘଟାଇଥାଏ । ମୁଖ୍ୟତଃ ବଣ୍ୟ ପଶୁ, ଯଥା - ଗଧିଆ, ହେଟାବାଘ, ବଣକୁକୁର, ବଣମାଙ୍କଡ଼, ଓଧ, ନେଉଳ, ବାଦୁଡ଼ି ଆଦି ଜୀବ ଏ ଭୂତାଣୁର ସ୍ୱାଭାବିକ ବାହକ ବା ଅବଧାରକ ହୋଇଥା'ନ୍ତି । ସେମାନଙ୍କଠାରୁ ଏହା ଜନପଦର ଗୃହପାଳିତ ପଶୁ, ମୁଖ୍ୟତଃ କୁକୁର ଓ ବିରାଡ଼ିମାନଙ୍କୁ ସଂକ୍ରମିତ ହୋଇଥାଏ । ଆମ ଦେଶରେ ବିଶେଷକରି ପାଗଳାକୁକୁର ଓ ଶିଆଳ କାମୁଡ଼ା ଯୋଗୁଁ ମଣିଷଙ୍କଠାରେ ଜଳାତଙ୍କ ରୋଗର ସୃଷ୍ଟି ହୁଏ । ତା'ଛଡ଼ା ଏହି ପାଗଳାକୁକୁର ଓ ଶିଆଳ କାମୁଡ଼ିବାଯୋଗୁଁ ଅନ୍ୟ କେତେକ ତୃଣଭୋଜୀ ଗୃହପାଳିତ ପ୍ରାଣୀ, ଯଥା- ଗାଈ, ମଇଁଷି, ଛେଳି, ମେଣ୍ଢା ମଧ୍ୟ ଜଳାତଙ୍କ ରୋଗଗ୍ରସ୍ତ ହୋଇ ମରିଥା'ନ୍ତି; କିନ୍ତୁ ଏ ତୃଣଭୋଜୀ ପ୍ରାଣୀମାନେ କେବେବି ଏ ଭୂତାଣୁର ବାହକ ହୁଅନ୍ତି ନାହିଁ ।

ଆଜିଯାଏଁ ଜଳାତଙ୍କ ରୋଗର କୌଣସି ସଫଳ ଔଷଧ ବାହାରି ନାହିଁ। କେନ୍ଦ୍ରୀୟ ସ୍ନାୟୁତନ୍ତ୍ରୀରେ ଭୂତାଣୁ ସଂକ୍ରମଣ ଘଟି ରୋଗଲକ୍ଷଣ ପ୍ରକଟିତ ହୋଇଗଲେ ମୃତ୍ୟୁ ହିଁ ଅନିବାର୍ଯ୍ୟ ହୋଇଥାଏ । ସୁତରାଂ ପ୍ରତିଷେଧ ହିଁ ଏଥିରୁ ରକ୍ଷା ପାଇବାର ଏକମାତ୍ର ବିକଳ୍ପ ବ୍ୟବସ୍ଥା । ଏହାକୁ Post exposure Prophylaxis ବା କୁକୁର (ବିଲୁଆ) କାମୁଡ଼ାର ପରବର୍ତ୍ତୀ ପ୍ରତିଷେଧକ ବ୍ୟବସ୍ଥା ବୋଲି କୁହାଯାଇଥାଏ । ବିଶ୍ୱ-ସ୍ୱାସ୍ଥ୍ୟ-ସଂସ୍ଥା ଦ୍ୱାରା ସର୍ବୋତ୍କୃଷ୍ଟ ବିବେଚିତ ଯେଉଁ ପ୍ରତିଷେଧକ ଟିକା ଆଜିକାଲି ସବୁ ଦେଶରେ ଉପଲବ୍ଧ ହେଉଛି, ତାହା ହେଲା- ମନୁଷ୍ୟ ଜୀବକୋଷରୁ କର୍ଷିତ ଟିକା ବା Human diploid cell cultured vaccine । ଏହା ସର୍ବତୋଭାବେ ନିରାପଦ ଓ ଫଳପ୍ରଦ; ତା'ଛଡ଼ା ଏହାର କୌଣସି ପ୍ରକାର ଅପକ୍ରିୟା ଓ ପାର୍ଶ୍ୱପ୍ରତିକ୍ରିୟା ନ ଥାଏ । ଏ ଟିକାକୁ କାମୁଡ଼ା ଦିନ, କାମୁଡ଼ିବାର ୩ୟ ଦିନ, ୭ମ ଦିନ, ୧୪ଶ ଦିନ, ୨୮ ଦିନ ଓ ୯୦ ଦିନ ଏପରି ଦିନକୁ ମାତ୍ରାଏ କରି ଛଅଥର ଦିଆଯାଇଥାଏ । ଏହା ମୂଳତଃ ଏକ 'ପ୍ରଜନନ' ବା antigenର କାମ କରି ରୋଗୀ ଶରୀରରେ ଜଳାତଙ୍କ ବିରୋଧୀ ନିର୍ଦ୍ଦିଷ୍ଟ 'ପ୍ରତିପିଣ୍ଡ' (antibody) ସୃଷ୍ଟି କରିଥାଏ; ଫଳତଃ ରୋଗର ଉପଶମ ଘଟି ରୋଗୀ ସୁସ୍ଥ ହୋଇଯାଏ ।

ଜଳାତଙ୍କ ରୋଗର ଇତିବୃତ୍ତ, ବିସ୍ତାର ଓ ବ୍ୟାପକତା, ହେତୁ ଓ ନିଦାନ, ଲକ୍ଷଣ ଓ ଚିକିତ୍ସା ଏବଂ ମନୁଷ୍ୟ ଓ ମନୁଷ୍ୟେତର ପ୍ରାଣୀମାନଙ୍କଠାରେ ଏ ରୋଗପ୍ରସୂତ ଉପସର୍ଗଗୁଡ଼ିକର କେତେକ ସାଦୃଶ୍ୟ ଓ ବିବିଧତାକୁ ଡାକ୍ତର ସ୍ୱାଇଁ ତାଙ୍କ ପୁସ୍ତିକାରେ ପ୍ରାଞ୍ଜଳ ପରିବେଷଣ କରିଛନ୍ତି; ବର୍ଣ୍ଣନାର ଶୈଳୀ ସହଜ-ସରଳ, ସ୍ୱତଃସ୍ଫୂର୍ତ୍ତ ଏବଂ ଅନେକାଂଶତଃ ସ୍ୱୀୟ ବୃତ୍ତିଗତ ଅନୁଭୂତି ଓ ଅବବୋଧର ନିଛକ ପରିପ୍ରକାଶ ପରି ମନେହୁଏ । ''ବିଦ୍ୟା-ବିତର୍କ-ବିଜ୍ଞାନ-ସ୍ଥିତଧୀ-କ୍ରିୟାଶୀଳତା'' ଆଦି ସୃଜନଧର୍ମୀ ଗୁଣାବଳିର ଅଧିକାରୀ ଡାକ୍ତର ସ୍ୱାଇଁଙ୍କର ନିଷ୍ଫଳ ଅନ୍ୱେଷାପ୍ରସୂତ ଏ ପୁସ୍ତିକାଟି ଆଗ୍ରହୀ ପାଠକପାଠିକାଙ୍କଦ୍ୱାରା ଆଦୃତ ହେଉ- ଏହି କାମନା କରୁଛି ।

**ପ୍ରଫେସର ଡାକ୍ତର ବାସୁଦେବ କର**
ପୂର୍ବତନ ଅଧ୍ୟକ୍ଷ, ଶ୍ରୀରାମଚନ୍ଦ୍ରଭଞ୍ଜ ମେଡିକାଲ କଲେଜ
ଓ
ସଭାପତି, ଓଡ଼ିଶା ବିଜ୍ଞାନ ଏକାଡେମୀ

# ଜଳାତଙ୍କ ରୋଗ ସମ୍ବନ୍ଧରେ
# ଗାଁଗହଳିରେ ଲୋକଙ୍କର ଅନ୍ଧବିଶ୍ୱାସ

ବିରୂପା ନଦୀକୂଳରେ ଗଣିପୁର ଗୋଟିଏ ଛୋଟ ପଲ୍ଲୀ ଗାଁ । ଗାଁ ଗ୍ରାମଦେବତୀଙ୍କ ପାଖରେ ଗୋଟିଏ ଝଙ୍କା ବରଗଛ ମୂଳରେ ଗୋଟିଏ ପକ୍କା ଚଉତରାରେ କେତେଗୁଡ଼ିଏ ଲୋକ ଭିଡ଼ ଜମାଇଛନ୍ତି । ଗାଁ କବିରାଜ ରଘୁ ଘଡ଼େଇ ମାଗୁଣି ବେହେରା ପିଠିରେ ଲଗାଇଛି ଗୋଟିଏ କଂସାଥାଳିଆ ।



ପରିବେଶ ସୁରକ୍ଷା ସମିତି (ଗୋଟିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ)ର ସମ୍ପାଦକ ଶ୍ରୀ ଦିବ୍ୟରଞ୍ଜନ ସ୍ୱାଇଁ, ସେ ଯାଉଥିଲା ବେଳେ ଏ ଦୃଶ୍ୟ ତାଙ୍କ ନଜରରେ ପଡ଼ିଲା । ସ୍ଥାନୀୟ ଲୋକଙ୍କୁ ପଚାରି ବୁଝିଲେ ଯେ ଜଣେ ଲୋକକୁ ଗୋଟିଏ ପାଗଳାକୁକୁର କାମୁଡ଼ିଥିଲା । କବିରାଜେ ତା' ପିଠିରେ କଂସାଥାଳିଆ ଲଗାଇ ପାଗଳା କୁକୁରର ବିଷ ଦେହରେ ଚହଟି ଯାଇଛି ଦେଖୁଛନ୍ତି । ଜଡ଼ିବୁଟି ପିଆଇ ଦେଲେ ମାଗୁଣିଆ ଭଲ ହୋଇଯିବ ବୋଲି ଲୋକେ ସ୍ୱେଚ୍ଛାସେବୀ ଅନୁଷ୍ଠାନର ସମ୍ପାଦକଙ୍କୁ କହିଲେ ।

ଦିବ୍ୟରଞ୍ଜନବାବୁ ମାଗୁଣିଆକୁ ସଙ୍ଗେ ସଙ୍ଗେ ପଦ୍ମପୁର ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରକୁ ନେଇଯିବା ପାଇଁ, ଯେତେ ବୁଝାଇଲେ କେହି ମାନିଲେ ନାହିଁ ।

ପରିବେଶ ସୁରକ୍ଷାସମିତିର ସମ୍ପାଦକ ସ୍ଥାନୀୟ ସରପଞ୍ଚବାବୁଙ୍କୁ ଭେଟି ସବୁ କଥା କହିଲେ । ସରପଞ୍ଚବାବୁ କହିଲେ ଆଠମାଣିଆ ବୁଦୁବୁଦୁକିଆ ଜଙ୍ଗଲରୁ ପାଗଳା ବିଲୁଆ ଗାଁ ଭିତରକୁ ପଶିଆସି ପ୍ରଫୁଲ୍ଲ ବିଶ୍ୱାଳର



ପୋଷାକୁକୁରକୁ କାମୁଡ଼ି ଦେଇଥିଲା । କୁକୁର ପାଟିରୁ ଲାଳ ବୋହିଲା । ଚେନ୍ ଛିଣ୍ଡାଇ ଏଣେତେଣେ ଦୌଡ଼ିଲା । ମାଗୁଣିଆ ପାଗା ହାଟରୁ ସନ୍ଧ୍ୟାସମୟରେ ଫେରିଲା ବେଳେ, ତାକୁ କାମୁଡ଼ି ଦେଲା । ଗାଁ କବିରାଜ ତା'ର ଚିକିତ୍ସା କରୁଛନ୍ତି । ସେ ଭଲ ହୋଇଯିବ ଯେ ।



ଦିବ୍ୟରଞ୍ଜନବାବୁ ଏଥିରେ ବିରକ୍ତି ପ୍ରକାଶ କଲେ । କହିଲେ, ପାଖରେ ଡାକ୍ତରଖାନା ଥାଉ ଥାଉ, ଏସବୁ କାହିଁକି ? ଏ ସବୁ ଅନ୍ଧବିଶ୍ୱାସ କିପରି ଦୂର ହେବ ସରପଞ୍ଚବାବୁ ?

ସରପଞ୍ଚବାବୁ କ'ଣ କରିବା ? ଲୋକଙ୍କର ଏ ଅନ୍ଧବିଶ୍ୱାସ କିପରି ବଦଳାଇବା ?

ସମ୍ପାଦକ ମହାଶୟ କହିଲେ, ଦେଖନ୍ତୁ କାଲି ସଞ୍ଜବେଳକୁ ଏ ଠାକୁରାଣୀ ମେଳାରେ ଗୋଟିଏ ସଭା ଆୟୋଜନ କରନ୍ତୁ । ମୁଁ ପଦ୍ମପୁର ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତର ମନୋଜ ଦାସକୁ ଡାକିଆଣିବି । ତାଙ୍କଠାରୁ ଜଳାତଙ୍କ ରୋଗ କ'ଣ, ତା'ର ଲକ୍ଷଣ ଓ ପ୍ରତିଷେଧକ ସମ୍ବନ୍ଧରେ ବୁଝିବା ।

ସରପଞ୍ଚବାବୁ କହିଲେ, ଠିକ୍ ଅଛି । ଡାକ୍ତରବାବୁଙ୍କୁ ଡାକିଆଣନ୍ତୁ । ସବୁ କଥା ଆଖପାଖ ଗ୍ରାମବାସୀଙ୍କି ବୁଝାଇ ଦେବା ।

ପରଦିନ ସନ୍ଧ୍ୟାବେଳକୁ ଠାକୁରାଣୀ ମେଳାରେ ସଭାର ଆୟୋଜନ ହେଲା । ପଦ୍ମପୁର ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତରବାବୁ ଓ ପରିବେଶ ସୁରକ୍ଷା ସମିତିର ସମ୍ପାଦକ ଦିବ୍ୟରଞ୍ଜନବାବୁ ଆସି ଠିକ୍ ସମୟରେ ପହଞ୍ଚିଲେ । ସ୍ଲାଇଡ଼୍ ସାହାଯ୍ୟରେ ଜଳାତଙ୍କ ସମ୍ବନ୍ଧରେ ବୁଝାଇବାକୁ ପ୍ରୋଜେକ୍ଟର ଆଣିଥାନ୍ତି । ଆଖପାଖ ଗ୍ରାମର ଲୋକ ସବୁ ଜମିଗଲେ ।

## ଜଳାତଙ୍କ ରୋଗ କ'ଣ ?

ଦିବ୍ୟରଞ୍ଜନବାବୁ ପ୍ରଥମେ ପଚାରିଲେ, ଡାକ୍ତରବାବୁ ! ଜଳାତଙ୍କ ରୋଗ କ'ଣ ? ବୁଝାଇ ଦିଅନ୍ତୁ । ସମସ୍ତେ ଉତ୍କଣ୍ଠିତ ହୋଇ ଡାକ୍ତରବାବୁ କ'ଣ କହିବେ ଚାହିଁଥାନ୍ତି । ଡାକ୍ତରବାବୁ କିଛି କହିବା ପୂର୍ବରୁ ପ୍ରୋଜେକ୍ଟରରେ ପ୍ରଥମେ ଗୋଟିଏ ପାଗଳା କୁକୁରର ଛବି ଦେଖାଇଲେ ।

ସରପଞ୍ଚବାବୁ କହିଲେ, ବାବାରେ କି ଭୟଙ୍କର ରୂପ । ଆମ ପ୍ରଫୁଲ୍ଲର ପାଗଳା କୁକୁର ରୂପଠାରୁ ଆହୁରି ଭୟଙ୍କର ଦିଶୁଛି । ପାଟି ମେଲା କରିଛି । ଲାଳ ଥପ୍ ଥପ୍ ହୋଇ ଗଡ଼ିପଡୁଛି । ଆଖି ତରାଟିକରି ଚାହିଁଛି ।




ଦିବ୍ୟରଞ୍ଜନବାବୁଙ୍କର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଡାକ୍ତରବାବୁ, ପାଗଳା କୁକୁରର ସ୍ୱରୂପ ନ ଦେଖି କହିଲେ- ମୁଁ ଏବେ ଜଳାତଙ୍କ ରୋଗ କ'ଣ ସେ ବିଷୟରେ କହୁଛି ଶୁଣନ୍ତୁ ।

ଜଳାତଙ୍କ ଗୋଟିଏ ଭୂତାଣୁଜନିତ ରୋଗ । ଆପଣମାନେ ଜାଣନ୍ତି ବସନ୍ତ, ହାଡ଼ଫୁଟି, ମିଳିମିଳା ଆଉ ଏବେ ବ୍ୟାପୁଥିବା ଏଡ୍ସ ରୋଗ । ସବୁଗୁଡ଼ିକ ଭୂତାଣୁଜନିତ ରୋଗ ।

ସମସ୍ତେ ହଁ ମାରିଲେ । ଶୁଣୁଛୁ ଆଜ୍ଞା ।

ଜଳାତଙ୍କ ସେହିପରି ଗୋଟିଏ ଭୂତାଣୁଜନିତ ରୋଗ । ନଟ ବେହେରା ପଛରୁ ପାଟିକରି ପଚାରିଲା, ଆଜ୍ଞା ଭୂତାଣୁ କ'ଣ, ଆମେ ବୁଝିପାରୁ ନାହୁଁ । ଟିକିଏ ବୁଝାଇ ଦିଅନ୍ତୁ । ସରପଞ୍ଚବାବୁ ନଟକୁ ତାଗିଦ୍ କରି କହିଲେ, ନଟ ଚୁପ୍ ରହ, ଡାକ୍ତରବାବୁ ବୁଝାଇ ଦେବେନି !

ଡାକ୍ତରବାବୁ କହିଲେ, ଭୂତାଣୁ ହେଉଛି ଗୋଟିଏ ଅଣୁଜୀବ । ଅତି କ୍ଷୁଦ୍ର । ଖାଲି ଆଖିରେ ତ ଦେଖିବା ବିଡ଼ମ୍ବନା । ଅଣୁବୀକ୍ଷଣ ଯନ୍ତ୍ରରେ ମଧ୍ୟ ଦେଖାଯିବ ନାହିଁ । ଗୋଟିଏ ସ୍ୱତନ୍ତ୍ର ଯନ୍ତ୍ର ଅଛି, ତା'ର ନାମ ହେଉଛି ଇଲେକ୍‌ଟ୍ରନ୍ ଅଣୁବୀକ୍ଷଣ ଯନ୍ତ୍ର । ତାହାରି ଦେହରେ ଦେଖାଯିବ । ଆମ ଡାକ୍ତରଖାନାରେ ସେ ଯନ୍ତ୍ର ନାହିଁ । ତାହା ଅତି ମୂଲ୍ୟବାନ୍ ଯନ୍ତ୍ର । ଏ ଭୂତାଣୁ ଗୋଟିଏ ମିଲିମିଟରର ଏକ ନିୟୁତାଂଶ । ଏହା କହି ଡାକ୍ତରବାବୁ ସେ ଭୂତାଣୁର ଛବି ପ୍ରୋଜେକ୍ଟରରେ ଦେଖାଇଲେ । କହିଲେ ଏହା ବନ୍ଧୁକ ଗୁଳି ଭଳି ।





(ଜଣେ ଚିତ୍ରକର ଦ୍ୱାରା ଅଙ୍କିତ ଛବି)



(ଇଲେକ୍ଟ୍ରନ୍ ଅଣୁବୀକ୍ଷଣ ଯନ୍ତ୍ରରେ ଦେଖାଯାଉଥିବା ଜଳାତଙ୍କ ଭୂତାଣୁର ଛବି)

ନଟ ପୁଣି ପଚାରିଲା, ଏ କ'ଣ ମଣିଷ, କୁକୁରକୁ ଗୁଳିମାରି ଦିଏ ?

ଡାକ୍ତରବାବୁ ହସି ହସି କହିଲେ, ହଁ ଆଜ୍ଞା ଗୁଳି ମାରିଦେଲେ । ମଣିଷ ପଶୁ, ଯାହାକୁ ଗୁଳି ମାରିବ, ଅର୍ଥାତ୍ ରୋଗର ଲକ୍ଷଣ ଦେଖାଯିବ, ସେ ବଞ୍ଚିବାର ଆଶା ନାହିଁ ।

ସମସ୍ତେ କହିଲେ, ବଡ଼ ସାଂଘାତିକ ରୋଗ ଆଜ୍ଞା ।

ଜଣେ ପଚାରିଲେ, ଜଳାତଙ୍କ କ'ଣ ? ତାକୁ ଜଳାତଙ୍କ ବୋଲି କାହିଁକି କୁହାଯାଉଅଛି ?

ଡାକ୍ତରବାବୁ କହିଲେ, ହଁ ଭଲ ପ୍ରଶ୍ନଟିଏ ପଚାରିଲେ । ଜଳାତଙ୍କ ଅର୍ଥ ହେଉଛି 'ଜଳର ଆତଙ୍କ' । ଏ ରୋଗ ହେଲେ ମନୁଷ୍ୟ ପାଣିକି ଡରେ ।

ପଛରୁ କିଏ ଜଣେ ପାଟିକରି ପଚାରିଲା, ଆଜ୍ଞା କୁକୁର କ'ଣ ଏମିତି ପାଣିକି ଡରିବ ? ପ୍ରଫୁଲ୍ଲ କୁକୁର ତ ଡରୁ ନ ଥିଲା ?

ଡାକ୍ତରବାବୁ ହସି ହସି କହିଲେ, ନା, ପଶୁମାନେ ଏ ଲକ୍ଷଣ ଦେଖାନ୍ତି ନାହିଁ ।

ସରପଞ୍ଚେ ନଟକୁ ସାବଧାନ କରି କହିଲେ, ତୁ ଶୁଣ, ଡାକ୍ତରବାବୁ କ'ଣ କହୁଛନ୍ତି । ମଝିରେ ମଝିରେ ଏଣୁତେଣୁ କ'ଣ ପଚାରିଦେଉଛୁ । ଡାକ୍ତରବାବୁ କୁହନ୍ତୁ ।

ଡାକ୍ତର କହିଲେ, ଏ ଭୂତାଣୁ ଜଳାତଙ୍କ ରୋଗ ସୃଷ୍ଟି କରେ । ମଣିଷ, ପଶୁ ସେଥିରୁ ବାଦ୍ ଯାଆନ୍ତି ନାହିଁ । ପଶୁ ଦେହରୁ ମଣିଷ ଦେହକୁ ଯାଏ ।

ପାଗଳା ପଶୁ କାମୁଡ଼ିଲେ ଏ ଭୂତାଣୁ ସ୍ନାୟୁରୁ ସୁଷୁମ୍ନାକାଣ୍ଡକୁ ଚହଟିଯାଇ, ମସ୍ତିଷ୍କରେ ପହଞ୍ଚି ରୋଗ ଜନ୍ମାଏ ।

ଦିବ୍ୟରଞ୍ଜନବାବୁ ପଚାରିଲେ, ଏ ଭୂତାଣୁ କ'ଣ ବାୟୁମଣ୍ଡଳରେ ଥାଏ, ଅନ୍ୟ ଭୂତାଣୁ ଭଳି ?

ଡାକ୍ତରବାବୁ କହିଲେ, ନା, ଏ ଭୂତାଣୁ ଜଙ୍ଗଲୀ ବିଲୁଆ, ଗଧିଆ, କୋକିଶିଆଳି, ବଣକୁକୁର, ବଣମାଙ୍କଡ଼, ଓଧ, ନେଉଳଙ୍କର ସ୍ନାୟୁମଣ୍ଡଳରେ ବସା ବାନ୍ଧିଥାଏ । ମଧ୍ୟ ଓ ଦକ୍ଷିଣ ଆମେରିକାର ରକ୍ତଖିଆ ବାଦୁଡ଼ିଙ୍କ ସ୍ନାୟୁରେ ଥାଏ । ରକ୍ତରେ ଏ ଭୂତାଣୁ କ୍ୱଚିତ ମିଳେ । ଗାଈ କ୍ଷୀରରେ ମଧ୍ୟ ମିଳେ । ଏ ଭୂତାଣୁ ଦୁଇ ପ୍ରକାରର । ବଣ ପଶୁଙ୍କ ଦେହରେ ଯେଉଁ ଭୂତାଣୁ ଥାଆନ୍ତି, ତାଙ୍କୁ ବୁଲ ବା ରାସ୍ତାର ଭୂତାଣୁ ବୋଲି କହନ୍ତି । ଇଂରାଜୀରେ ତାକୁ Street Virus (ଷ୍ଟ୍ରିଟ ଭାଇରସ୍) ବୋଲି କହନ୍ତି । ସେ ଭୂତାଣୁର ରୋଗ ସୃଷ୍ଟି କରିବା ଶକ୍ତି ଜଣା ନ ଥାଏ । ସେ ଭୂତାଣୁକୁ ଅଣୁଜୀବବିଜ୍ଞାନୀମାନେ ସଂଗ୍ରହ କରି ପରୀକ୍ଷାଗାରର ଠେକୁଆମାନଙ୍କ ଦେହରେ କ୍ରମାନ୍ୱୟରେ ୨୦-୨୫ଟି ଠେକୁଆଙ୍କ ଦେହରେ ପ୍ରବେଶ କରାଇଲେ, ସବାଶେଷ ଠେକୁଆଠାରୁ ଯେଉଁ ଭୂତାଣୁ ବାହାରିବ, ତାହା ହେଉଛି ନିବନ୍ଧିତ ଭୂତାଣୁ । ଅର୍ଥାତ୍ ସେ ଭୂତାଣୁର ରୋଗ ସୃଷ୍ଟି କରିବା ଶକ୍ତି ସୀମିତ । ପରୀକ୍ଷା କରି ଦେଖାଯାଇଛି ଯେ ବୁଲା ଭୂତାଣୁ ୧୪-୨୦ ଦିନରେ ରୋଗ ସୃଷ୍ଟି କରୁଥିଲାବେଳେ, ନିବନ୍ଧିତ ଭୂତାଣୁ ଏକ ସପ୍ତାହ ମଧ୍ୟରେ ରୋଗ ସୃଷ୍ଟି କରିଥାଏ । ସୁତରାଂ ଏ ଶେଷୋକ୍ତ ଭୂତାଣୁକୁ ଇଂରାଜୀରେ fixed virus ବା ସୀମିତ ଭୂତାଣୁ କୁହାଯାଏ । ସେହି ଜଙ୍ଗଲୀ ବିଲୁଆ, ଗଧିଆ ଓ



(ମନୁଷ୍ୟକୁ ପାଗଳା କୁକୁର କାମୁଡ଼ିଲେ ଭୂତାଣୁ କିପରି ମନୁଷ୍ୟ ଶରୀରକୁ ଯାଏ ତାହାର ଏକ ଚିତ୍ର)

କୋକିଶିଆଳି ଆଦି ପୁରପଲ୍ଲୀରେ କୁକୁର, ବିରାଡ଼ି ଓ ଅନ୍ୟାନ୍ୟ ରୋମନ୍ଥକ ପ୍ରାଣୀମାନଙ୍କୁ କାମୁଡ଼ିଲେ ଜଳାତଙ୍କ ରୋଗ ହୋଇଥାଏ । ପୋଷା କୁକୁରଙ୍କୁ ଏହି ବନ୍ୟଜନ୍ତୁମାନେ କାମୁଡ଼ିଲେ ସେ ରୋଗରେ ପ୍ରପୀଡ଼ିତ ହୋଇ ଅନ୍ୟାନ୍ୟ ପଶୁମାନଙ୍କୁ କାମୁଡ଼ିଲେ ରୋଗ ବ୍ୟାପେ । ସାଧାରଣତଃ କୁକୁରମାନଙ୍କ ସାହାଯ୍ୟରେ ପ୍ରାୟ ୯୬ ପ୍ରତିଶତ ରୋଗ ସଂକ୍ରମିତ ହୋଇଥାଏ । ଏ ଭୂତାଣୁର ଗୋଟିଏ ଧର୍ମ ହେଲା, ଏହା ସାମାନ୍ୟ ଖରାରେ ଓ ବିଶୋଧକ ଦ୍ରବ୍ୟରେ ମରିଯାଏ । ଧରନ୍ତୁ କୁକୁରଟାକୁ ଜଳାତଙ୍କ ରୋଗ ହୋଇଛି, ଲକ୍ଷଣ ଦେଖାଦେଇ ମରିଗଲେ, ତାକୁ ଖରାରେ ଫୋପାଡ଼ି ଦେଲେ ୨ ଘଣ୍ଟା ଭିତରେ ଭୂତାଣୁମାନେ ମରିଯାଆନ୍ତି । ବିଶୋଧକ ପଦାର୍ଥ ଫିନାଇଲ, ଡେଟଲ, ସାଭଲନ୍, ଆଲ୍‌କୋହଲ, ପଟାସିଅମ ପରମାଙ୍ଗାନେଟ ଯେକୌଣସି ଉପଚାରରେ ମରିଯିବେ । ସଂକ୍ରମିତ ମନୁଷ୍ୟ ଓ ପଶୁ ବଞ୍ଚିଥିବା ଅବସ୍ଥାରେ ଭୂତାଣୁ ସେମାନଙ୍କ ଦେହରେ ଥାଏ । ସେମାନେ ମରିଗଲେ, ମରିବାର ୨ଘଣ୍ଟା ପରେ ଭୂତାଣୁମାନେ ମରିଯାଆନ୍ତି ।

ଦିବ୍ୟରଞ୍ଜନବାବୁ ପ୍ରଶ୍ନ କଲେ, ଆଜ୍ଞା ଏ ରୋଗ କ'ଣ ସବୁ ଅଞ୍ଚଳରେ ଦେଖାଯାଏ ?

ଡାକ୍ତରବାବୁ - ଏ ରୋଗ ବିଶେଷତଃ ଗ୍ରୀଷ୍ମମଣ୍ଡଳୀୟ ଜଳବାୟୁ ଅଞ୍ଚଳରେ ଦେଖାଯାଏ । ଏହା ଭୂତାଣୁର ଗୋଟିଏ ଉତ୍ତମ ପରିବେଶ । ଆମ ଦେଶର ଆଣ୍ଡାମାନ୍ ଓ ଲାକ୍ଷାଦ୍ୱୀପକୁ ଛାଡ଼ିଦେଲେ, ସବୁ ରାଜ୍ୟରେ ଦେଖାଦେଇ ଅଛି । ଅଷ୍ଟ୍ରେଲିଆ ଓ ଆଣ୍ଟାର୍କଟିକା ମହାଦେଶକୁ ଛାଡ଼ିଦେଲେ, ଅନ୍ୟସବୁ ଦେଶରେ ଏ ରୋଗ ଦେଖାଦେଇଅଛି । ଶୁଣିଲେ ଆଶ୍ଚର୍ଯ୍ୟ ହେବ ଯେ ଆମ ଦେଶରେ ବର୍ଷକୁ ପ୍ରାୟ ୩୦-୩୫ ହଜାର ଲୋକ ଜଳାତଙ୍କ ରୋଗରେ ମରିଥା'ନ୍ତି । ପଶୁଙ୍କ ହିସାବ ନାହିଁ । ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନର ଗୋଟିଏ ପରିସଂଖ୍ୟାନ ଅନୁଯାୟୀ ଏସିଆ ମହାଦେଶରେ ପ୍ରାୟ ୧୦ ଲକ୍ଷରୁ ଅଧିକ ବ୍ୟକ୍ତି ଜଳାତଙ୍କ ରୋଗର ଟିକା ନେଇଥାନ୍ତି । ପ୍ରାୟ ୩୪ ଲକ୍ଷ ଲୋକ ଜଳାତଙ୍କ ପ୍ରବଣ ଅଞ୍ଚଳରେ ବାସ କରନ୍ତି ।

ସରପଞ୍ଚବାବୁ ପ୍ରଶ୍ନ କଲେ - ପାଗଳା କୁକୁର କାମୁଡ଼ିବାର କେତେ ଦିନ ପରେ ରୋଗ ହୁଏ ?

ଡାକ୍ତରବାବୁ କହିଲେ, ଭଲ ପ୍ରଶ୍ନଟିଏ ପଚାରିଲେ । ଭୂତାଣୁ ମନୁଷ୍ୟ ବା ପଶୁ ଦେହରେ ପ୍ରବେଶ କରିବା ସମୟଠାରୁ ରୋଗ ସୃଷ୍ଟି ହେବାକୁ ସମୟ ଲାଗେ । ଏହି ସମୟକୁ ଉଷ୍ମାୟନ କାଳ କୁହନ୍ତି । ସେକଥା ବୁଝାଇବାକୁ ଯାଇ ଡାକ୍ତରବାବୁ କହିଲେ ଯେପରି କୁକୁଡ଼ା କୁଡୁକି ହୋଇ ଅଣ୍ଡା ଧରି ଉଷୁମାଇ ୨୧ ଦିନ ପରେ ଚିଆଁ ବାହାରନ୍ତି, ସେହିପରି ଭୂତାଣୁ ଶରୀର ମଧ୍ୟରେ ବଂଶବୃଦ୍ଧି କଲେ ତା'ର ପରାକ୍ରମ ଜଣାପଡ଼େ । ସେ ସମୟ ଦୁଇ ସପ୍ତାହରୁ ୩ ମାସ ହୋଇପାରେ । ବିଭିନ୍ନ କାରଣରୁ ଏହାର ବ୍ୟତିକ୍ରମ ଦେଖାଯାଏ । ତେବେ ଉଷ୍ମାୟନକାଳ ହାରାହାରି ୭୨ ଦିନ ।

୧. ଶରୀରର କେଉଁ ଜାଗାରେ କାମୁଡ଼ା କ୍ଷତ ସୃଷ୍ଟି ହୋଇଅଛି । ଅର୍ଥାତ୍ ମୁହଁ, ମୁଣ୍ଡ ପାଖରୁ ଯେତେ ନିକଟ ହୋଇଥିବ, ଉଷ୍ମାୟନ କାଳ ସେତେ ନିକଟ ହେବ । କାରଣ ଆପଣ ଜାଣନ୍ତି, ସେ ସ୍ଥାନରୁ ମସ୍ତିଷ୍କ ନିକଟ । ଭୂତାଣୁ କମ୍ ସମୟରେ ମସ୍ତିଷ୍କରେ ପହଞ୍ଚି ରୋଗ ସୃଷ୍ଟି କରିବ । ଉଦାହରଣସ୍ୱରୂପ, ମୁହଁରେ କାମୁଡ଼ିଲେ ଦୁଇ ସପ୍ତାହ ମଧ୍ୟରେ ରୋଗ ଧରେ, କିନ୍ତୁ ଗୋଡ଼ରେ କାମୁଡ଼ିଲେ କେତେ ମାସ ଲାଗିଯାଇପାରେ ।

୨. କାମୁଡ଼ାର ପ୍ରକୋପ - ଗଭୀର କ୍ଷତ ହେଲେ ଉଷ୍ମାୟନ କାଳ କମ୍ ହେବ ।

୩. ଭୂତାଣୁର ମାତ୍ରା - ଭୂତାଣୁ କେତେଦୂର ସକ୍ରିୟ; ଉଦାହରଣସ୍ୱରୂପ, ବିଲୁଆ ବା କୁକୁର ଯାହାକୁ କାମୁଡ଼ିବ ଓ ବେଶି ସ୍ଥାନରେ କାମୁଡ଼ିବ, ଭୂତାଣୁଙ୍କର ସଂଖ୍ୟା ଅନେକ ଥିବାରୁ, ସଂକ୍ରମଣ ଶୀଘ୍ର ହେବ ।

୪. କାମୁଡ଼ିଥିବା ବ୍ୟକ୍ତି ବା ପଶୁର ଶରୀରର ଅବସ୍ଥା । ଅର୍ଥାତ୍ କମ୍ ବୟସ୍କ, ବୃଦ୍ଧାବସ୍ଥା ଓ କୌଣସି ରୋଗରେ ଦୁର୍ବଳ ହୋଇଥିଲେ, ଭୂତାଣୁ ଶୀଘ୍ର ସକ୍ରିୟ ହୋଇଯିବେ । କାରଣ ସେ ସମୟରେ ପ୍ରତିରୋଧକାରିଣୀ ଶକ୍ତି କମ୍ ଥାଏ, ମନୁଷ୍ୟ ହେଉ ବା ପଶୁ ହେଉ ।

ପଛରୁ ନଟ କହିଲା, ଆଜ୍ଞା ଆଠମାଣିଆ ଜଙ୍ଗଲରୁ ପହରିକିଆ ବିଲୁଆ ଭୁକିଲେଣି । ଡାକ୍ତରବାବୁ ଘଣ୍ଟା ଦେଖି କହିଲେ, ହଁ ଆଠଟା ବାଜିଲାଣି । ଆଜି ଏତିକି ଥାଉ ।

ସରପଞ୍ଚବାବୁ କହିଲେ, ଡାକ୍ତରବାବୁ ! ଆହୁରି ବହୁତ କଥା ପଚାରିବାକୁ ଅଛି । କାଲିକି ଟିକେ କଷ୍ଟକରି ଆସିବେକି ? ଡାକ୍ତରବାବୁ, ହଁ ଆଜ୍ଞା, ଆପଣମାନଙ୍କ ସେବାରେ ଆମେ ଅଛୁ । କାଲିକି ନିଶ୍ଚୟ ଆସିବି, ତା'ପରେ ପଶୁଡାକ୍ତରବାବୁଙ୍କୁ ସାଙ୍ଗରେ ଡାକି ଆଣିବି । ସେ ପଶୁଙ୍କର ଲକ୍ଷଣ ବୁଝାଇ ଦେବେ ଓ ତାଙ୍କର ଅନୁଭୂତି କହିବେ । ହେଉ, ନମସ୍କାର ।

ସମସ୍ତେ ଉଚ୍ଚସ୍ୱରରେ କହିଲେ, ଡାକ୍ତରବାବୁ ନମସ୍କାର । ଦିବ୍ୟରଞ୍ଜନବାବୁ ନମସ୍କାର । ସଭା ଭଙ୍ଗ ହେଲା ।

## ଜଳାତଙ୍କ ରୋଗର ଲକ୍ଷଣମାନ

ତା' ପରଦିନ ସଞ୍ଜବେଳେ ଗାଁ ଚଉତରା ପାଖରେ ସଭାର ଆୟୋଜନ ହେଲା । ଆଖପାଖ ଗାଁମାନଙ୍କରୁ ଲୋକଙ୍କର ଧାଉଡ଼ି ଛୁଟିଲା ଗଣିପୁର ଗାଁ ଚଉତରା ପାଖକୁ । ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତର ମନୋଜ ଦାସ ଓ ପଶୁଡାକ୍ତର ଡା ସୋମନାଥ ନନ୍ଦ ଓ ପରିବେଶସୁରକ୍ଷା ସମିତି ସଂପାଦକ ତାଙ୍କର ସଭ୍ୟବୃନ୍ଦକୁ ନେଇ ଆସି ପହଞ୍ଚିଲେ । ସମିତିର ସଭ୍ୟବୃନ୍ଦ ଏ ସଭାର ଆଲୋଚନାରେ ଭାଗ ନେଇ ଗାଁ ଗହଳିରେ ଜଳାତଙ୍କରୋଗ ସମ୍ବନ୍ଧରେ ପ୍ରଚାର ପ୍ରସାର କରିବାର କଥା ହେଲା ।

ଡା ମନୋଜ ଦାସ କହିଲେ, ପ୍ରଥମେ ମନୁଷ୍ୟ ଦେହରେ ଦେଖାଯାଉଥିବା ଲକ୍ଷଣମାନ ହେଲା ୧. ଉଗ୍ରରୂପ, ୨. ମୌନରୂପ ।

**ଉଗ୍ରରୂପ** - ଆଗରୁ କହିଛି, ଜଳାତଙ୍କ ରୋଗୀ ଜଳ ଦେଖିଲେ ଭୟାତୁର ହୁଏ । ହଠାତ୍ ପବନ ବହିଲେ ଡରେ । ଅଧିକ ଆଲୋକ ପଡ଼ିଲେ ଡରେ । ଅନ୍ଧାରରେ ରହିବାକୁ ଭଲ ପାଏ । ତା'ର ଛାତି ଥରେ । ପାଟିରୁ ଲାଳ ଗଡ଼ାଏ । ଖାଦ୍ୟପେୟ ଗ୍ରହଣ କରେ ନାହିଁ । ବିକଟାଳ ଶବ୍ଦ କରେ । କ୍ରମେ ହୃତ୍‌ପିଣ୍ଡର ସ୍ପନ୍ଦନ ବନ୍ଦ ହୋଇଯାଏ । ଏସବୁ ଲକ୍ଷଣ ଦେଖାଦେବାର ୪–୫ ଦିନ ପରେ ମୃତ୍ୟୁବରଣ କରେ ।

**ମୌନରୂପ** - ଏ ପ୍ରକାର ଲକ୍ଷଣ କମ୍ ଦେଖାଯାଏ । ପ୍ରାୟ ୧୦-୨୦ ପ୍ରତିଶତ ରୋଗୀଙ୍କ ପାଖରେ ଏ ପ୍ରକାର ଲକ୍ଷଣ ଦେଖାଯାଏ । ଜଳାତଙ୍କ ଟିକା କମ୍ ହୋଇଥିଲେ, ଏ ପ୍ରକାର ଲକ୍ଷଣ ଦେଖାଯାଏ । ରୋଗୀର ଝାଡ଼ା, ପରିସ୍ରା ବନ୍ଦ ହୋଇଯାଏ । ଖାଦ୍ୟପେୟ ଗ୍ରହଣ କରେ ନାହିଁ । ପାଟିରୁ ଲାଳ ବହେ । ଗୋଡ଼ଆଡୁ ପକ୍ଷାଘାତ ଆରମ୍ଭ ହୋଇଯାଇ କ୍ରମେ ଉପରକୁ ବ୍ୟାପେ । ରୋଗୀ ସଂଜ୍ଞାହୀନ ହୋଇ ଏକ ବା ଦୁଇ ସପ୍ତାହ ମଧ୍ୟରେ ମରିଯାଏ ।

ଏସବୁ ଲକ୍ଷଣ ଦେଖାଯିବା ପରେ ଆଉ ପରୀକ୍ଷାଗାରରେ ପରୀକ୍ଷା କରିବା ଦରକାର ପଡ଼େ ନାହିଁ । ଲକ୍ଷଣ ଦେଖାଯିବା ପରେ ରୋଗୀ ସଂସ୍ପର୍ଶରେ ଆସୁଥିବା ଲୋକ, ଡାକ୍ତର, ନର୍ସ ସମସ୍ତେ ସାବଧାନ ହେବା ଉଚିତ । ରୋଗୀର ମୃତ୍ୟୁ ସୁନିଶ୍ଚିତ । ରୋଗୀ ଝାଡ଼ା, ପରିସ୍ରା, ଲାଳ ପଡ଼ିଥିବା ସ୍ଥାନକୁ ବିଶୋଧନ କରାଯିବା ଅତି ଜରୁରୀ ।

ଏବେ ପଶୁରୋଗ ବିଶେଷଜ୍ଞ ଡା ସୋମନାଥ ନନ୍ଦ ଜଳାତଙ୍କ ରୋଗରେ ପ୍ରପୀଡ଼ିତ ପଶୁଙ୍କ ସମ୍ବନ୍ଧରେ କହିବେ ।

ସମସ୍ତେ କହିଲେ ଜୁହାର ଡାକ୍ତରବାବୁ ।

ଡା ନନ୍ଦ ତାଙ୍କର ବକ୍ତବ୍ୟ ଆରମ୍ଭ କଲେ ।

ଡା ମିଶ୍ର ତୁମମାନଙ୍କୁ ପାଗଳା କୁକୁରର ଛବି ଦେଖାଇଛନ୍ତି । ମନୁଷ୍ୟ ପରି ପଶୁମାନଙ୍କର ଦୁଇପ୍ରକାର ରୂପ । ଯଥା - ୧. ଉଗ୍ରରୂପ, ୨. ମୌନରୂପ ।

ପୂର୍ବରୁ କୁହାଯାଇଅଛି ଯେ କୁକୁର ଏ ରୋଗ ସଂକ୍ରମଣ ପାଇଁ ମୁଖ୍ୟ ଅଂଶ ଗ୍ରହଣ କରେ । କାରଣ ପ୍ରାୟ ୯୬ ପ୍ରତିଶତ ରୋଗ ସଂକ୍ରମଣ କୁକୁର ମାଧ୍ୟମରେ ହୋଇଥାଏ ।

## କୁକୁରର ଉଗ୍ରରୂପ

(କ) **ଅସ୍ୱାଭାବିକ ଅବସ୍ଥା** - ପ୍ରଥମ ଲକ୍ଷଣ ହେଲା ପାଟିରୁ ଲାଳ ବହେ । ପଶୁ ଅସ୍ୱସ୍ତିକର ଅନୁଭବ କରେ । ମୁନିବର ବୋଲ ମାନେ ନାହିଁ । ସାଥୀମାନଙ୍କଠାରୁ ଅଲଗା ରହେ । ସମତଳ ଭୂମିରେ ମଧ୍ୟ ଇଟା ଖଣ୍ଡ ଉପରେ ଚାଲିଲାଭଳି ଚାଲେ । ଛୋଟେଇ ଛୋଟେଇ ଚାଲେ । କୁଆଡ଼େ ଅନ୍ୟମନସ୍କ ହୋଇ ପୁଣି ବୁଲିପଡ଼ି ଫେରିଆସି ଶୋଇପଡ଼େ । ଉଠିପଡ଼ି

ପବନରେ ମାଛି ମାରିଲା ଭଳି ଲକ୍ଷଣ ଦେଖାଏ । ଲୋକଗହଳି ମଧ୍ୟକୁ ପଶିଗଲେ, କେହି ଧରି ପକାଇଲେ କାମୁଡ଼ି ପକାଏ । ଖାଦ୍ୟପେୟ ଗ୍ରହଣ କରେ ନାହିଁ । କୌଣସି ଜାଗାରେ ପାଣି ଦେଖିଲେ, ମନୁଷ୍ୟ ଜଳାତଙ୍କ ରୋଗୀ ଭଳି ଭୟ ନ କରି ପିଇବାକୁ ଚେଷ୍ଟା କରେ, କିନ୍ତୁ ପିଇପାରେ ନାହିଁ । ପାଟି ପକ୍ଷାଘାତ ହୋଇଥାଏ । ତଳପାଟି ଓହଳି ପଡ଼େ । ବନ୍ଧା ହୋଇଥିଲେ ଚେନ୍ କାମୁଡ଼େ, ପାଖରେ ଥିବା କାଠି, କୁଟା ଯାହା ପାଏ କାମୁଡ଼େ । ଆଖି ରକ୍ତବର୍ଣ୍ଣ ଦେଖାଯାଏ । ଆଖି ଡୋଳା ବଡ଼ ବଡ଼ ହୋଇଯାଏ । ଶରୀରର ଉତ୍ତାପ ବଢ଼ିଯାଏ । ଏ ଅବସ୍ଥା ଦେଖିଲେ ମୁନିବ ବା ଚିକିତ୍ସା କରୁଥିବା ବ୍ୟକ୍ତି ସତର୍କତା ଅବଲମ୍ବନ କରିବା ଉଚିତ ।

(ଖ) **ଉତ୍ତେଜିତ ଅବସ୍ଥା** - ଜଳାତଙ୍କର ଏହା ହେଉଛି ପ୍ରକୃତ ସ୍ୱରୂପ । ଆଖିଡୋଳା ବଡ଼ ବଡ଼ ହୋଇଯାଏ । ଛବିରେ ଆପଣମାନେ ଦେଖିଛନ୍ତି । ଫିଟିଗଲେ ମାଇଲ ମାଇଲ ଦୌଡ଼େ । ବାଟରେ ଯାହାକୁ ଦେଖେ, ମନୁଷ୍ୟ, ପଶୁ ତାଙ୍କୁ କାମୁଡ଼ି ପକାଏ । ବନ୍ଧା ହୋଇଥିଲେ ଚେନ କାମୁଡ଼ି ଛିଣ୍ଡାଇବାକୁ ଚେଷ୍ଟା କରେ । କୁକୁର କୋଠରି (Dog Kennel) ଭିତରେ ଥିଲେ ତା' ଭିତରେ ଇତସ୍ତତଃ ବୁଲେ । ଲୁହାଛଡ଼ କାମୁଡ଼େ । ପାଖରେ ଯାହା ପାଏ କାମୁଡ଼େ । ଏହାର ପରବର୍ତ୍ତୀ ଅବସ୍ଥା ହେଲା ପକ୍ଷାଘାତ ଅବସ୍ଥା ।

(ଗ) **ପକ୍ଷାଘାତ ଅବସ୍ଥା ବା ଶେଷ ଅବସ୍ଥା** - ଏ ଅବସ୍ଥାରେ ପଶୁର ଉତ୍ତେଜନା କମିଯାଏ । ପଛଗୋଡ଼ ଆଡୁ ପକ୍ଷାଘାତ ଆରମ୍ଭ ହୁଏ । ପଛଗୋଡ଼ ଘୋଷାରି ଘୋଷାରି ଚାଲେ । ତଳପାଟି ଓହଳି ପଡ଼ିଥାଏ । ଆଉ ଭୁକେ ନାହିଁ । ଏ ତା'ର ଶେଷ ଅବସ୍ଥା । ମରିଯାଏ ।

## ମୌନରୂପ

ଏ ଅବସ୍ଥାରେ ଜନ୍ତୁର ଉତ୍ତେଜନା ନ ଥାଏ । ଉଗ୍ରାବସ୍ଥାର ପ୍ରଥମ ଅବସ୍ଥା ଭଳି ଅନ୍ଧାରିଆ ସ୍ଥାନ ଖୋଜି ଚୁପ୍‌ହୋଇ ପଡ଼ିରହେ । କାମୁଡ଼ି ଗୋଡ଼ାଏ ନାହିଁ । କିନ୍ତୁ ପାଖରେ ଯାହାକୁ ପାଏ କାମୁଡ଼ି ପକାଏ । ମୁନିବ ଆଉଁଶିଲେ କାମୁଡ଼ି ଦିଏ । ଏ ଅବସ୍ଥାରେ ୩–୪ ଦିନ ପରେ ମରିଯାଏ ।

## ବିରାଡ଼ି

ବିରାଡ଼ି ସମସ୍ତଙ୍କ ଘରେ ପ୍ରାୟ ଥାଆନ୍ତି । ସୁତରାଂ ତା' ପ୍ରତି ବିଶେଷତଃ ପିଲାଛୁଆଙ୍କ ପ୍ରତି ସାବଧାନ ହେବା ଉଚିତ । ପାଗଳାକୁକୁର ବିରାଡ଼ିଙ୍କୁ ଧରିଦେଲେ, ସେ ଜଳାତଙ୍କରେ ଆକ୍ରାନ୍ତ ହୁଏ । କୁକୁର ପରି ତା'ର ଉଗ୍ରରୂପ ଦେଖାଯାଏ । କାହାରି ବୋଲ ମାନେ ନାହିଁ । ଏଣେତେଣେ ଡିଆଁଡେଇଁ କରେ । ଦୌଡ଼େ । ପାଟିରୁ ଲାଳ ବହେ । ଖାଦ୍ୟ ଗ୍ରହଣ କରେ ନାହିଁ । କେହି ଧରିଲେ କାମୁଡ଼ି ପକାଏ । ରାଗିଲେ ଯେପରି ବିରାଡ଼ିମାନେ ନଖ ବାହାର କରନ୍ତି, ସେହିପରି ନଖ ବାହାର କରେ । ମୋଟା କଣ୍ଠରେ ବୋବାଏ, ଏ ପ୍ରକାର ଲକ୍ଷଣ ଦେଖାଦେଲେ ୩–୪ ଦିନ ପରେ ମରିଯାଏ ।

ଦିବ୍ୟରଞ୍ଜନବାବୁ ପଚାରିଲେ, ଆଜ୍ଞା ଗାଈଗୋରୁଙ୍କର କ'ଣ ଲକ୍ଷଣ ଦେଖାଯାଏ, ଦୟାକରି କୁହନ୍ତୁ ।

ଡାକ୍ତରବାବୁ କହିଲେ, ଗୃହପାଳିତ ପ୍ରାଣୀଙ୍କ କଥା କହିବି ।

## ଗାଈ, ଗୋରୁ, ଛେଳି, ମେଣ୍ଢା ଓ ମଇଁଷି

ପାଟିରୁ ଲାଳ ବୋହିବା ପ୍ରଥମ ଲକ୍ଷଣ । ପଶୁ ଖାଦ୍ୟପେୟ ଗ୍ରହଣ କରେ ନାହିଁ । ଦୁଧିଆଳୀ ଗାଈର କ୍ଷୀର ଶୁଖିଯାଏ ।







ଏ ପଶୁମାନଙ୍କର ଉଗ୍ର ଓ ମୌନରୂପ ଦେଖାଯାଏ । ଉଗ୍ରାବସ୍ଥାରେ ଆଖିଡୋଳା ବଡ଼ ବଡ଼ ଓ ରକ୍ତାକ୍ତ ଦେଖାଯାଏ । କୌଣସି ଦିଗରେ ବୋକାଙ୍କ ଭଳି ଚାହିଁ ରହନ୍ତି । ପଘାଛିଣ୍ଡାଇ ଏଣେତେଣେ ଦୌଡ଼ନ୍ତି । ମାରି ଗୋଡ଼ାନ୍ତି । ମାରଣା ଷଣ୍ଢଭଳି ଗାଈଗୋରୁ, ଛେଳିମେଣ୍ଢା, ମଇଁଷି ଶିଙ୍ଗରେ ମାଟି ତାଡ଼ନ୍ତି । ଗୋଡ଼ରେ ମାଟି ତାଡ଼ନ୍ତି । କୌଣସି ଶବ୍ଦ ଶୁଣିଲେ ବିକଟାଳ ଶବ୍ଦ କରି ବୋବାନ୍ତି । ଦୌଡ଼ିଲେ ଖାଲଢିପ, ଯାନବାହନ, ମନୁଷ୍ୟ କାହାରିକି ମାନନ୍ତି ନାହିଁ । ହଠାତ୍ ତଳେ ପଡ଼ିଯାଇ ମୋଟା କଣ୍ଠରେ ଗର୍ଜନ କରି, ପୁଣି ଉଠି ଦୌଡ଼ନ୍ତି । ଗାଈମାନେ ଋତୁମତୀ ହେଲାଭଳି ଷଣ୍ଢ ଦେଖିଲେ ଠିଆହୋଇଯାଇ ସଙ୍ଗମ ପାଇଁ ଅପେକ୍ଷା କରନ୍ତି । ଏ ଅବସ୍ଥା ୪—୫ ଦିନ ଭୋଗିଲା ପରେ ମରିଯାନ୍ତି । ଏ ଅବସ୍ଥାରେ ସେମାନଙ୍କୁ ମୋଟା ପଘା କିମ୍ବା ଚେନ୍‌ରେ ବାନ୍ଧି ଗୁହାଳରେ ଅବରୁଦ୍ଧ କରି ରଖିବା ଆବଶ୍ୟକ ।

ମୌନାବସ୍ଥାରେ ସେମାନେ ପଡ଼ିରହନ୍ତି, ପକ୍ଷାଘାତ ଅବସ୍ଥା ଆସିଯାଏ ଓ ଲକ୍ଷଣ ଦେଖାଦେବାର ୨।୩ ଦିନ ପରେ ମରିଯା'ନ୍ତି । ଡାକ୍ତରବାବୁ ତାଙ୍କର ନିଜ ଅନୁଭୂତି କଥା କହିଲେ ।

ମୋର ଗୋଟିଏ ଜର୍ସିଗାଈ ୧୨।୧୪ ଲିଟର କ୍ଷୀର ଦେଉଥିଲା । ତାକୁ ପାଗଳାକୁକୁରଟିଏ କାମୁଡ଼ିଦେଲା । ୭—୮ ଦିନ ପରେ ତା'ର ରୋଗ ବାହାରିଲା । ପାଟିରୁ ଲାଳ ବହିଲା । ପଘା ଛିଣ୍ଡାଇ ଏଣେତେଣେ ଦୌଡ଼ିଲା । ବାଟରେ ଯାହାକୁ ଦେଖିଲା ମାରିଗୋଡ଼ାଇଲା । ଚାକରପିଲା ତାକୁ ଗୋଡ଼ାଇ ଗୋଡ଼ାଇ ଧରିପାରିଲା ନାହିଁ । ଗୋଟିଏ ଖାଲରେ ପଡ଼ି ଆଉ ଉଠିପାରିଲା ନାହିଁ । ଉଠାଇଲେ ବିକଟାଳ ଶବ୍ଦ କରି ରଡ଼ି ଛାଡ଼ିଲା । ସେଠାରେ ତା'ର ମୃତ୍ୟୁ ହେଲା ।

### ଘୁଷୁରି

ଉଗ୍ରରୂପ ଦେଖାଯାଏ । ପାଟିରୁ ଲାଳ ବହେ । ଏଣେତେଣେ ବୁଲି ଯାହାକୁ ପାଆନ୍ତି କାମୁଡ଼ି ପକାନ୍ତି । ଅନ୍ୟ ଘୁଷୁରି ସାଥୀଙ୍କୁ କାମୁଡ଼ି ପକାନ୍ତି । ଶେଷରେ ପକ୍ଷାଘାତ ହୋଇ ପଡ଼ିଯାଇ ମରନ୍ତି ।

**ଘୋଡ଼ା, ଗଧ**

ପାଟିରୁ ଲାଳ ବହେ । ପେଟ ଟାଣିଲା ଭଳି ଲକ୍ଷଣ ଦେଖାଯାଏ । ତଳେ ପଡ଼ି ଛଟପଟ ହୋଇ ଗଡ଼ନ୍ତି । ଘୋଡ଼ାମାନେ ଶାଳରେ କାଠ, ବାଉଁଶ, ଲୁହାଛଡ଼, ଯାହା ପାଆନ୍ତି କାମୁଡ଼ନ୍ତି । ଗାଈଙ୍କ ଭଳି ସେମାନଙ୍କର ଯୌନ ଉତ୍ତେଜନା ଦେଖାଯାଏ । ଖାଦ୍ୟପେୟ ଗ୍ରହଣ କରନ୍ତି ନାହିଁ । ପଛଗୋଡ଼ପଟୁ ପକ୍ଷାଘାତ ଆରମ୍ଭ ହୋଇଥାଏ । ପଶୁ ଆଉ ଉଠି ନ ପାରି ଲମ୍ବହୋଇ ପଡ଼ିଯାଇ ମୃତ୍ୟୁକୁ ଅପେକ୍ଷା କରନ୍ତି ।

**ପୋଷା ନେଉଳ**

ପାଟିରୁ ଲାଳ ବୋହିବା ପ୍ରଥମ ଲକ୍ଷଣ । କାମୁଡ଼ି ଗୋଡ଼ାନ୍ତି । ଆଖି ବଡ଼ ବଡ଼ ଓ ରକ୍ତାକ୍ତ ଦେଖାଯାଏ ।

କଟକ ମଧୁପୁର ରାଜାଙ୍କ କୋଠିରେ ବହୁତ ବର୍ଷ ତଳେ ଗୋଟିଏ ସୁନ୍ଦର ନେଉଳ ଜଳାତଙ୍କ ରୋଗରେ ମରିଯାଇଥିଲା ।

ମୂଷା, ଚୁଚୁନ୍ଦ୍ରା ଓ ଗୁଣ୍ଡୁଚିମୂଷାଙ୍କର ଜଳାତଙ୍କ ରୋଗ ଧରିବାର ଆମ ଦେଶରେ ଜଣାପଡ଼ି ନାହିଁ । କିନ୍ତୁ ନେଉଳ ଓ ଓଧ ଏ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଅବଶ୍ୟ ମୂଷା ଉଗ୍ର ହୋଇ କାମୁଡ଼ିଦେଲେ ଜଳାତଙ୍କ ଟିକା ନେବା ଉଚିତ ।

**ଚଢ଼େଇ**

ଚଢ଼େଇମାନେ ମଧ ଏ ରୋଗରେ ଆକ୍ରାନ୍ତ ହୁଅନ୍ତି । ସେମାନେ ତାଙ୍କର ସାଥୀ ଓ ଗୃହପାଳିତ ପଶୁମାନଙ୍କୁ କାମୁଡ଼ି ଗୋଡ଼ାନ୍ତି । ପୂର୍ବରୁ କହିଛି ଯେ ମଧ ଓ ଦକ୍ଷିଣ ଆମେରିକାର ଜଙ୍ଗଲରେ ରକ୍ତଖିଆ ବାଦୁଡ଼ି ଏ ରୋଗର ବାହକ । ଗୋଟିଏ ସମ୍ବାଦ ଅନୁଯାୟୀ କେରଳରେ ଶାଗୁଣାମାନେ ଜଳାତଙ୍କ ରୋଗରେ ସଂକ୍ରମିତ କୁକୁର ମାଂସ ଖାଇ ଏ ରୋଗରେ ଆକ୍ରାନ୍ତ ହୋଇଥିଲେ । କିନ୍ତୁ ସେମାନେ ରୋଗର ବାହକ ନୁହନ୍ତି ।

## ଚିଡ଼ିଆଖାନା ପଶୁ

ନନ୍ଦନକାନନରେ ୧୯୮୦ ମସିହା ମାର୍ଚ୍ଚ ମାସରେ ଗୋଟିଏ ୮ ବର୍ଷ ବୟସର ସିଂହକୁ ଚିଡ଼ିଆଖାନାର ନେଉଳ କାମୁଡ଼ି ଦେବାରୁ ସେ (ସିଂହ) ଜଳାତଙ୍କ ରୋଗରେ ପୀଡ଼ିତ ହୋଇ ମରିବା ପୂର୍ବରୁ ତା'ର ଗୋଟିଏ ୨ ବର୍ଷର ଛୁଆ ଓ ଆଉ ଗୋଟିଏ ସିଂହକୁ କାମୁଡ଼ି ଦେବାରୁ ସେମାନେ ଜଳାତଙ୍କ ରୋଗରେ ମରିଥିଲେ । ଏହା ଡାକ୍ତରୀ ପରୀକ୍ଷା ହୋଇ ଜଣାପଡ଼ିଥିଲା । ସେହିପରି ଶିମିଳିପାଳ ସଂରକ୍ଷିତ ଜଙ୍ଗଲରେ ଆମର ଅତି ପରିଚିତ ଖଇରୀ ବାଘୁଣୀକୁ ଗୋଟିଏ ପାଗଳ ବିଲୁଆ କାମୁଡ଼ି ଦେବାରୁ ସେ ଜଳାତଙ୍କ ରୋଗରେ ପୀଡ଼ିତ ହୋଇ ମରିଗଲା ।

## ବିଲୁଆ, କୋକିଶିଆଳି

ଏମାନେ ଯଦିଓ ଜଙ୍ଗଲର ପଶୁ । ଗାଁ ଭିତରକୁ ପଶିଆସି କୁକୁଡ଼ା ମାରି ଖାଆନ୍ତି । ସାଧାରଣତଃ ଶିଆଳଟିଏ ଦେଖିଲେ ଶୁଭ ବୋଲି ଗାଁ ଗହଳିରେ ଲୋକେ ବିଶ୍ୱାସ କରନ୍ତି । ''ବାମେ ଶବ ଶିବା କୁମ୍ଭା'' କିନ୍ତୁ ସେଇ ଶିବା (ବିଲୁଆ) ଗାଁ ଭିତରକୁ ପଶିଆସିଲେ, କୁକୁର କି ମନୁଷ୍ୟ ଗୋଡ଼ାଇଲେ





ସେମାନେ ପଳେଇଯାଆନ୍ତି । କିନ୍ତୁ ଶିଆଳ ପାଗଳ ହୋଇଥିଲେ ପଳାଇ ନ ଯାଇ ଆକ୍ରମଣ କରିଥାଏ ।

ସରପଞ୍ଚବାବୁ କହିଲେ, ସତରେ ତ, ଆମ ଆଠମାଣିଆ ଜଙ୍ଗଲରୁ ପାଗଳା ବିଲୁଆଟି ଆସି କୁକୁରକୁ କାମୁଡ଼ିବାରୁ କୁକୁରକୁ ଜଳାତଙ୍କ ରୋଗ ହୋଇଥିଲା ଓ ସେ ମନୁଷ୍ୟଙ୍କୁ କାମୁଡ଼ି ଜଳାତଙ୍କ ରୋଗରେ ପକାଇଥିଲା ପରା ।

ପଶୁଡାକ୍ତର କହିଲେ ସବୁ ପଶୁପକ୍ଷୀଙ୍କର ଜଳାତଙ୍କ ରୋଗର ଲକ୍ଷଣମାନ ଆପଣମାନେ ଶୁଣିଲେ । ପାଗଳା ଜନ୍ତୁର ଲକ୍ଷଣ ଜାଣିବାରେ ଆଉ କିଛି ସନ୍ଦେହ ରହିଲା କି ?

ସମସ୍ତେ ସମସ୍ୱରରେ କହିଲେ ନାହିଁ ଆଜ୍ଞା ।

## ଜଳାତଙ୍କପରି ଆଉ କେତେକ ରୋଗ

(ବିଶେଷତଃ କୁକୁରମାନଙ୍କର)

ପଶୁଡାକ୍ତରବାବୁ କହିଲେ, ଆଉ ଗୋଟିଏ ନିହାତି ଜାଣିବା ବିଷୟ ମୁଁ ଛାଡ଼ିଗଲି, ଶୁଣନ୍ତୁ ।

କୁକୁରଙ୍କର ଆଉ କେତେକ ରୋଗ ବା ଲକ୍ଷଣ ଦେଖାଯାଏ, ଯାହାକି ଜଳାତଙ୍କ ରୋଗ ବୋଲି ଭ୍ରମ ଉପୁଜାଏ । ତାହା ହେଉଛି -

୧. **ଅପସ୍ମାର ରୋଗ** - କୁକୁର ଖାଦ୍ୟପେୟ ଗ୍ରହଣ ନ କରି, ବାଡ଼େଇ ଛାଟେଇ ହୁଏ । ପାଟିରୁ ଲାଳ ବହେ ନାହିଁ । ତାହା ଚିକିତ୍ସା କଲେ ଭଲ ହୋଇଯାଏ ।

୨. **କୁକୁରଙ୍କର ଡିଷ୍ଟେମ୍ପର ରୋଗ** - ଜ୍ୱର ହୁଏ । ଆଖି ଲେଞ୍ଚୋରାଏ, ନାକରୁ ସିଙ୍ଗାଣି ବହେ । ପେଟ ତଳେ ଓ ଦେହରେ କାଛୁଭଳି ଫୋଟକା ବାହାରେ । କୁକୁର ଖାଦ୍ୟ ଗ୍ରହଣ କରେନା । ପାଟିରୁ ଲାଳ ଗଡ଼େ ନାହିଁ । ଏହା ଚିକିତ୍ସାଧୀନ ।

୩. **ପାରଭୋ** - ଏହା ଗୋଟିଏ ଭୂତାଣୁଜନିତ ରୋଗ । ଜ୍ୱର ହୁଏ । ପାଟିରୁ ଲାଳଗଡ଼େ ନାହିଁ । ଏହା ଚିକିତ୍ସାଧୀନ ।

୪. ତଣ୍ଟିରେ ମାଛକଣ୍ଟା ବା ହାଡ଼ ଲାଗିଗଲେ କୁକୁର ଜଳାତଙ୍କ ରୋଗରେ ଆକ୍ରାନ୍ତ ହେଲାଭଳି ପାଟି ମେଲାକରି ରହେ । କିଛି ଖାଦ୍ୟ ଖାଇପାରେ ନାହିଁ । ପାଟି ମେଲା ହୋଇଥିବାରୁ ସାମାନ୍ୟ ଲାଳଗଡ଼ାଏ । ଚାମଚ ସାହାଯ୍ୟରେ ପାଟି ମେଲାକରି, ଚିମୁଟାରେ କଣ୍ଟା ବା ହାଡ଼ ତଣ୍ଟିରୁ ବାହାର କରିଦେଲେ କୁକୁର ଭଲ ହୋଇଯାଏ ।

ତୁମେମାନେ ଆଶ୍ଚର୍ଯ୍ୟ ହେବ, ମୁଁ ମୋର ଏ ଚାକିରିକାଳ ମଧ୍ୟରେ ଏହିଭଳି କଷ୍ଟ ଥାଇପାରେ ବୋଲି ଜଳାତଙ୍କ ରୋଗ ସଂକ୍ରମିତ କୁକୁର ପାଟିରେ ହାତ ପୂରାଇ ୩ ବାର ଯନ୍ତ୍ରଣାଦାୟକ ଜଳାତଙ୍କ ଟିକା ନେଇଅଛି । ତେବେ ଗୋଟିଏ କଥା ମନେରଖନ୍ତୁ, କୁକୁରମାନଙ୍କର ଏପରି ଲକ୍ଷଣ ଦେଖିଲେ ଡାକ୍ତରଙ୍କୁ ନ ଦେଖାଇ ତାକୁ ମାରିଦେବେ ନାହିଁ । ମନେରଖନ୍ତୁ କାମୁଡ଼ିଥିବା କୁକୁର, ଜଳାତଙ୍କ ରୋଗରେ ପୀଡ଼ିତ ହୋଇଥାଉ ବା ନ ଥାଉ, ତାକୁ ପରୀକ୍ଷାମୂଳକ ଭାବରେ ୧୦ ଦିନ ବାନ୍ଧି ରଖିବେ । ଯଦି ମରିଗଲା, ଜାଣିବେ, ଜଳାତଙ୍କ ରୋଗରେ ମଲା । ସେଥିପାଇଁ କାମୁଡ଼ିଥିବା ମନୁଷ୍ୟ ବା ପଶୁଙ୍କର ଚିକିତ୍ସା ବ୍ୟବସ୍ଥା କରିବାକୁ ହେବ ।

ଡାକ୍ତରବାବୁ କହିଲେ, ଆହୁରି ବହୁତ କଥା ରହିଗଲା ଆଉଦିନେ ଆଲୋଚନା କରିବା ।



ସରପଞ୍ଚବାବୁ କହିଲେ, ଏବେ ତ ଧାନକଟା ଆରମ୍ଭ ହୋଇଗଲାଣି । ଆମକୁ ଦୁଇସପ୍ତାହ ସମୟ ଦିଅନ୍ତୁ ଆଜ୍ଞା । ଦୁଇସପ୍ତାହ ପରେ ସମସ୍ତେ ପୁଣି ଏଇଠି ଏକାଠି ହେବା । ଡାକ୍ତରବାବୁମାନେ ଆସିବେ, ଆମକୁ ଜଳାତଙ୍କ ସମ୍ବନ୍ଧରେ ଆହୁରି ଅନେକ କଥା ଶୁଣାଇବେ ।

ଦୁଇ ଡାକ୍ତରବାବୁଙ୍କୁ ଜୁହାର କରି, ସମସ୍ତେ ବିଦାୟ ନେଲେ । ସଭା ଭଙ୍ଗ ହେଲା ।

## ଜଳାତଙ୍କ ରୋଗର ବ୍ୟାପ୍ତି

ଧାନକଟା ସରିଲା । ଦିବ୍ୟରଞ୍ଜନବାବୁ ସରପଞ୍ଚ ଓ ଦୁଇ ଡାକ୍ତରବାବୁଙ୍କୁ ଡକାଇ, ଆଉଦିନେ ସଭାର ଆୟୋଜନ କଲେ । ଡାକ୍ତରବାବୁମାନେ ଆଗ୍ରହରେ ଆସି ପହଞ୍ଚିଲେ । ଗାଁଗହଳିରୁ ଲୋକମାନେ ମଧ୍ୟ ଆଉ କ'ଣ ସବୁ ଡାକ୍ତରମାନେ କହିବେ, ଆଗ୍ରହରେ ଶୁଣିବାକୁ ଆସି ପହଞ୍ଚିଲେ ।

ଦିବ୍ୟରଞ୍ଜନବାବୁ କହିଲେ, ଡାକ୍ତରବାବୁ, ଜଳାତଙ୍କ ରୋଗ କ'ଣ ଓ ତା'ର ଲକ୍ଷଣମାନ ଆମେ ବୁଝିଗଲୁ । ଏ ରୋଗର ବ୍ୟାପ୍ତି ସମ୍ବନ୍ଧରେ କହିବେ କି ?

ଡାକ୍ତରବାବୁ କହିଲେ, ଭଲ ପ୍ରଶ୍ନଟିଏ ପଚାରିଲେ । କହୁଛି ମନଦେଇ ଶୁଣନ୍ତୁ ।

ଏ ରୋଗ ବହୁତ ପୁରୁଣା । ଖ୍ରୀଷ୍ଟପୂର୍ବ ୩୦୦୦ ମସିହାରେ ଏ ରୋଗ ଦେଖାଦେଇଥିବାର ଆମ କବିରାଜମାନେ ଜାଣିଥିଲେ । ଖ୍ରୀଷ୍ଟପୂର୍ବ ୫୦୦ ମସିହାରେ ପାଶ୍ଚାତ୍ୟ ମନୀଷୀ ଡିମୋକ୍ରିଟିସ ଓ ପ୍ରଥମ ଶତାବ୍ଦୀରେ ସେଲକସ୍ ଏ ରୋଗରେ ପଶୁମାନେ ଆକ୍ରାନ୍ତ ହୋଇ ମରନ୍ତି ବୋଲି ଜାଣିଥିଲେ । ତା'ପରେ ୧୨୦୨ ମସିହାରେ ଦକ୍ଷିଣ ଫ୍ରାନ୍ସ ଓ ପଶ୍ଚିମ ୟୁରୋପୀୟ ଦେଶମାନଙ୍କରେ ସର୍ବପ୍ରଥମେ ଗଧିଆ, ବାଘ ଓ କୋକିଶିଆଳି ଏ ରୋଗରେ ମରିଥିବାର ଜଣାପଡ଼ିଥିଲା । ୧୮୦୪ ମସିହାରେ ଜଣେ ବୈଜ୍ଞାନିକ ଜିଙ୍କେ ପ୍ରଥମେ ଜଣାଇଥିଲେ ଯେ ପାଗଳା କୁକୁରର ଲାଳଦ୍ୱାରା ଏ ରୋଗ ସଂକ୍ରମିତ

ହୋଇଥାଏ । ବାବିଲୋନିଆର କେତେକ ସମ୍ଭ୍ରାନ୍ତ ବ୍ୟକ୍ତି କୁକୁର ଲାଳ ଗଡ଼େଇ ପାଟି ମେଲାକରି, ଲାଞ୍ଜ ସିଧାକରି ଦଉଡ଼ିଲେ, ତାକୁ ପାଗଳା ବୋଲି ଭାବି ଗୁଳିକରି ମାରି ଦେଉଥିଲେ ।



ଲୁଇ ପାଷ୍ଟର

୧୮୦୦ ମସିହା ଶେଷଭାଗ ଫ୍ରାନ୍ସର ସ୍ୱନାମଧନ୍ୟ ବୈଜ୍ଞାନିକ ଲୁଇ ପାଶ୍ଚର (Louis Pasteur) ଏ ରୋଗ ସମ୍ବନ୍ଧରେ ନୂତନ ତଥ୍ୟ ବାହାର କରିଥିଲେ । ପାଗଳା ବିଲୁଆ, କୁକୁର ଆଦି ପଶୁ କାମୁଡ଼ିଲେ ଯେଉଁ ଟିକା ଦିଆଯାଉଅଛି, ତାହା ଏହି ମନୀଷୀ ଉଦ୍ଭାବନ କରିଥିଲେ । ୧୮୯୫ ମସିହା ଜୁଲାଇ ୬ ତାରିଖରେ ସେ ସର୍ବପ୍ରଥମେ ଜଳାତଙ୍କର ଟିକା (Antirabic Vaccine) ପ୍ରସ୍ତୁତ କରିଥିଲେ । ସେ ଟିକାକୁ ପାଗଳାକୁକୁର କାମୁଡ଼ିଥିବା ଜଣେ ୯ ବର୍ଷ ବୟସର କୃଷକ ପିଲା ଜୋସେଫ ମୈଷ୍ଟର (Joseph Meister)କୁ ଦେଇ ଚିକିତ୍ସାଦ୍ୱାରା ବଞ୍ଚାଇ ଦେଇଥିଲେ । ତାହାପରେ ଆଉ ତିନୋଟି ଜଳାତଙ୍କ ରୋଗୀଙ୍କି ଚିକିତ୍ସା କରି ବଞ୍ଚାଇ ଦେଇଥିଲେ । ଏହା ବିଶ୍ୱରେ ଚହଳ ପକାଇ ଦେଇଥିଲା ।

୧୯୩୯ ମସିହା ଘଟଣା । ବୈଜ୍ଞାନିକ ଲିଚ (Leach) ଜଳାତଙ୍କରେ ପୀଡ଼ିତା ହୋଇ ମରିଯାଇଥିବା ଫ୍ଲରୀ (Flurry) ନାମ୍ନୀ ଗୋଟିଏ ୧୪ ବର୍ଷୀୟା ବାଳିକାର ମସ୍ତିଷ୍କ, ଲାଳ ଓ ଅଶ୍ରୁବାହୀ ଗ୍ରନ୍ଥିରୁ ଜଳାତଙ୍କ ଭୂତାଣୁ ସଂଗ୍ରହ କରି କୁକୁଡ଼ା ଅଣ୍ଡା ଦେହରେ ପୋଷଣ (Culture) କରି, ଜଳାତଙ୍କ ରୋଗର ଗୋଟିଏ ଟିକା ପ୍ରସ୍ତୁତ କରିଥିଲେ । ତାହାକୁ ଫ୍ଲରୀ ଟିକା (Flurry strain) ନାମରେ ନାମିତ । ଜଳାତଙ୍କରେ ପୀଡ଼ିତ ପଶୁମାନଙ୍କୁ ଦିଆଯାଇ ଚିକିତ୍ସା କରାଯାଉଥିଲା । କିନ୍ତୁ ଏବେ ଟିସୁ କଲଚର ଟିକା ଦିଆଯାଉଅଛି ।

ଦିବ୍ୟରଞ୍ଜନବାବୁ ପଚାରିଲେ, ଏ ଟିକା କ'ଣ ବିଦେଶରୁ ଆମଦାନି ହେଉଛି ନା ଆମ ଦେଶରେ ତିଆରି ହେଉଅଛି ?

ଡାକ୍ତରବାବୁ କହିଲେ, ହିମାଚଳପ୍ରଦେଶରେ କଶୌଲୀଠାରେ ବୈଜ୍ଞାନିକ ଡାଭିଡ ସେମ୍‌ପଲ (David Semple) ମେଣ୍ଢାର ମସ୍ତିଷ୍କରୁ ତନ୍ତୁ ବାହାର କରି ଏ ଟିକା ପ୍ରସ୍ତୁତ କରିଥିଲେ । ସେଥିପାଇଁ ତାହାର ନାମ ହେଉଛି ସେମ୍‌ପଲ ଟିକା (Semple Vaccine) । ତାହାକୁ ନ୍ୟୁରାଲ୍ ଟିସ୍ୟୁ ଭାକ୍ସିନ (N.T.V.) ବୋଲି କୁହାଯାଏ । ଅବଶ୍ୟ କେତେକ କାରଣରୁ ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥା ଏହାର ବ୍ୟବହାର ନିଷେଧ କରିଛନ୍ତି । ୧୯୬୦ ମସିହାରେ ଆହୁରି ଉନ୍ନତ ଟିକା ଫ୍ରାନ୍ସ, ଜର୍ମାନ, ଯୁକ୍ତରାଷ୍ଟ୍ର ଆମେରିକା ଓ ସ୍କାଣ୍ଡିନେଭିଆ ଦେଶମାନଙ୍କରେ ପ୍ରସ୍ତୁତ ହେଲା । ତାହା ହେଉଛି ତନ୍ତୁ ନିର୍ମିତ ଟିକା ବା Tissue Culture Vaccine ବୋଲି କୁହାଯାଏ । ଏବେ ଏହା ସବୁଆଡ଼େ ବ୍ୟବହାର କରାଯାଉଅଛି । ଏ ସମ୍ବନ୍ଧରେ ଆହୁରି ଅନେକ କଥା କହିବାର ଅଛି । ଆପଣମାନେ ଧୈର୍ଯ୍ୟ ଧରି ଶୁଣିବେ କି ?

ସମବେତ ଗ୍ରାମବାସୀ ଏକସ୍ୱରରେ କହିଲେ, ହଁ ଆଜ୍ଞା କୁହନ୍ତୁ ।

## ଜଳାତଙ୍କର ଚିକିତ୍ସା ଓ ପ୍ରତିଷେଧକ ବ୍ୟବସ୍ଥା

ଆପଣମାନେ ଶୁଣିଛନ୍ତି ଯେ ୯୬ ପ୍ରତିଶତ ବ୍ୟକ୍ତି କୁକୁର କାମୁଡ଼ାଦ୍ୱାରା ଜଳାତଙ୍କ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ସୁତରାଂ ବୁଲା କୁକୁରଙ୍କର ନିୟନ୍ତ୍ରଣ ଓ ପୋଷା କୁକୁରମାନଙ୍କର ପ୍ରତିଷେଧକ ଟିକାଦାନ ବ୍ୟବସ୍ଥା ଦ୍ୱାରାହିଁ ଜଳାତଙ୍କ ରୋଗ ଦୂର ହୋଇପାରିବ । ଆପଣମାନେ ସହରମାନଙ୍କରେ ଦେଖୁଛନ୍ତି, ବୁଲାକୁକୁର ପଲ ପଲ ହୋଇ ବୁଲୁଛନ୍ତି । ସେମାନଙ୍କର ଋତୁକାଳୀନ ମେଳ ଯାନବାହନ ଚଳାଚଳ ଓ ପଥଚାରୀମାନଙ୍କ ଚଲାବୁଲାରେ ବ୍ୟାହତ କରେ । ସେଥିପାଇଁ ପୌରନିଗମ ତରଫରୁ ପୂର୍ବରୁ ବୁଲାକୁକୁରମାନଙ୍କୁ ବିଷ ଔଷଧ ପ୍ରୟୋଗ କରି ମାରି ଦିଆଯାଉଥିଲା । ଏବେ ଉଚ୍ଚ ନ୍ୟାୟାଳୟ ତାହା ନିଷେଧ କରିଛନ୍ତି । ପୋଷା କୁକୁରମାନଙ୍କର ପଞ୍ଜିକରଣ ମଧ୍ୟ କରାଯାଏ । ଅବଶ୍ୟ ତାହା କଡ଼ାକଡ଼ି ଭାବରେ ନ ହେବାରୁ ବୁଲା କୁକୁର ସମସ୍ୟା ସବୁଆଡ଼େ ଦେଖା ଯାଉଅଛି ।

କୁକୁରଙ୍କର ଜନ୍ମ ନିୟନ୍ତ୍ରଣଦ୍ୱାରା ଏ ସମସ୍ୟା କିଛିଦୂର ସମାଧାନ ହୋଇପାରେ ।



ଦିବ୍ୟରଞ୍ଜନବାବୁ ପଚାରିଲେ, ଆମର ସ୍ୱେଚ୍ଛାସେବୀ ଅନୁଷ୍ଠାନର ଏ ପରିପ୍ରେକ୍ଷୀରେ କିଛି କରିବାର ଅଛି କି, କୁହନ୍ତୁ ।

ଡାକ୍ତରବାବୁ କହିଲେ, ଆପଣ ଏଥିପାଇଁ ଜନସଚେତନତା ସୃଷ୍ଟି କରନ୍ତୁ । ଡାକ୍ତରବାବୁ କହିଲେ, ଚିକିତ୍ସା ସମ୍ବନ୍ଧରେ ଆଲୋଚନା କରିବା ।

# କୁକୁର/ପଶୁ କାମୁଡ଼ିଲା ପରେ ଚିକିତ୍ସା

## ମନୁଷ୍ୟଙ୍କ ପାଇଁ

ପଶୁ କାମୁଡ଼ିଲାପରେ କାଳ ବିଳମ୍ବ ନ କରି ଭୂତାଣୁ ଯେପରି ସ୍ନାୟୁମଣ୍ଡଳରୁ ସୁଷୁମ୍ନାକାଣ୍ଡ ଓ ପରେ ମସ୍ତିଷ୍କକୁ ଯାଇ ନ ପାରିବ, ସେଥିପାଇଁ ନିର୍ଦ୍ଦିଷ୍ଟ ଟିକା ଓ ସିରମ୍ (Serum) ପ୍ରୟୋଗ କରିବାକୁ ହେବ । ସେଥିପାଇଁ କ'ଣ କରିବେ ।

୧. କାମୁଡ଼ିଥିବା କ୍ଷତର ଚିକିତ୍ସା

୨. କାମୁଡ଼ିଥିବା କୁକୁର/ପଶୁକୁ ୧୦ ଦିନ ଆବଦ୍ଧ କରି ରଖିବେ ।

୩. ଜଳାତଙ୍କ ଟିକା (Antirabic Vaccine) ଓ ଆଣ୍ଟିରେବିକ୍ ସିରମ ବା ଇମ୍ୟୁନୋଗ୍ଲୋବୋଲିନ୍ (Immuno Globulin) ଦେବାକୁ ହେବ ।

୪. ବ୍ୟକ୍ତି ଭୟାତୁର ହୋଇଥିଲେ ତାକୁ ସାନ୍ତ୍ୱନା ଦେବେ ।

ଦିବ୍ୟରଞ୍ଜନବାବୁ ପଚାରିଲେ, ଆଜ୍ଞା କାମୁଡ଼ା ଘା' କ'ଣ ଚିକିତ୍ସା ହେବ ?

ପଶୁଡାକ୍ତରବାବୁ କହିଲେ, ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ସବୁ କଥା ବୁଝାଇ କହୁଛି । ସ୍ୱେଚ୍ଛାସେବୀ ଅନୁଷ୍ଠାନର ପିଲାମାନେ ମନଦେଇ ଶୁଣନ୍ତୁ । ସେମାନେ ମଧ୍ୟ ଗାଁଗହଳିରେ ଏ କାର୍ଯ୍ୟ କରି ସାହାଯ୍ୟ କରିପାରିବେ ।

ମନୁଷ୍ୟ ଓ ପଶୁଙ୍କ ପାଇଁ ଏହି କେତେଗୁଡ଼ିଏ ଉପଚାର ପ୍ରଯୁଜ୍ୟ ।

୧. କାମୁଡ଼ା କ୍ଷତ ସ୍ଥାନକୁ ସାବୁନ ଲଗାଇ ଚଳନ୍ତା ପାଣିରେ ପରିଷ୍କାର କରି ସଫା କରି ଧୋଇଦେବେ । ସହରମାନଙ୍କରେ ପାଇପ୍ ପାଣିରେ ଧୋଇବାକୁ ସୁବିଧା । ଗାଁ ଗହଳିରେ କୌଣସି ପାତ୍ରରେ ପରିଷ୍କାର ପାଣି ଢାଳି ଘା'ରେ ଧୂଳି ମାଟି ଲାଗିଥିଲେ ତାକୁ ସଫା କରିବାକୁ ହେବ ।

୨. କୌଣସି ବିଶୋଧକ ପଦାର୍ଥ, ଯଥା- ପଟାସିୟମ ପରମାଙ୍ଗାନେଟ, ଡେଟଲ, ସାଭଲନ୍ ଜଳରେ ପରିଷ୍କାର କରିଦେବେ । ଟିଂଚର ଆଇଓଡ଼ିନ୍ କିମ୍ବା ବେଟାଡିନ ଲଗାଇ ଦେବେ ।

୩. କ୍ଷତଟି ଗହୀରିଆ ହୋଇ ଧୂଳିମାଟି ଲାଗିଥିଲେ, ତାକୁ ସାବୁନପାଣିରେ ପରିଷ୍କାର କରି, ମଲା ଚମ ଓ ତନ୍ତୁଗୁଡ଼ିକୁ ବିଶୋଧିତ କଇଁଚିରେ କାଟି ସଫା କରିଦେବେ ।

୪. କ୍ଷତ ସ୍ଥାନରେ କୌଣସି ପଟି ବନ୍ଧାଯିବ ନାହିଁ । ବଡ଼ କ୍ଷତ ହୋଇଥିଲେ ତାହା ଭିତରକୁ ସିରମ୍ ଓ ଇମ୍ୟୁନୋ ଗ୍ଲୋବୋଲିନ୍ ଇଂଜେକସନ୍ ଦେଇ ସାମାନ୍ୟ ଢିଲା ସିଲେଇ କରିଦେବେ । କ୍ଷତ ସ୍ଥାନ ଯେତେ ଖୋଲା ରହିବ ଭଲ । ପଟି ବାନ୍ଧିଲେ ଖୁବ୍ ଢିଲା ପଟି ବନ୍ଧାଯାଇପାରେ ।

୫. ଧନୁଷ୍ଟଙ୍କାର ପ୍ରତିଷେଧକ ଦେବା ଜରୁରୀ ।

୬. କ୍ଷତକୁ ବାହ୍ୟ ଜୀବାଣୁ ସଂକ୍ରମଣ ରକ୍ଷା କରିବାକୁ ଆଣ୍ଟିବାଇଓଟିକ୍ ଦିଆଯିବା ଦରକାର ।

ଦିବ୍ୟରଞ୍ଜନବାବୁ ପଚାରିଲେ, ଆମ ପୋଷାକୁକୁରଙ୍କୁ କିପରି ପ୍ରତିଷେଧକ ବ୍ୟବସ୍ଥା କରିବାକୁ ହେବ, ଦୟାକରି କୁହନ୍ତୁ ।

ପଶୁଡାକ୍ତରବାବୁ କହିଲେ, ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ସବୁ ବିଷୟ କହିବି ।

## ପୋଷାକୁକୁରଙ୍କୁ କିପରି ଜଳାତଙ୍କ ରୋଗରୁ ରକ୍ଷା କରିବେ ?

କୁକୁରଛୁଆଟିଏ ଆଣି ଘରେ ପୋଷିଲେ ତାହାକୁ ୩ମାସ ପୂର୍ବରୁ ପ୍ରତିଷେଧକ ବ୍ୟବସ୍ଥା କରିବାକୁ ପଡ଼ିବ । ତା'ପରେ ୩ ମାସ ପରେ ଆଉ ଗୋଟିଏ ଟିକା ଦିଆଯିବା ଦରକାର । ତାହାକୁ ବୁଷ୍ଟର ଡୋଜ କହନ୍ତି । ଏହାଦ୍ୱାରା ୩ ବର୍ଷ ପର୍ଯ୍ୟନ୍ତ ତା' ଦେହରେ ପ୍ରତିଷେଧକ ବ୍ୟବସ୍ଥା ରହିଥାଏ । ସେ ସମୟରେ ପାଗଳାବିଲୁଆ/କୁକୁର କାମୁଡ଼ିଲେ କିଛି ହେବ ନାହିଁ । ସେଥିପାଇଁ ଭୟ କରିବା ଦରକାର ନାହିଁ । ଅବଶ୍ୟ ଜଳାତଙ୍କ ପ୍ରବଣ ଅଞ୍ଚଳ, ଧରନ୍ତୁ ଆପଣଙ୍କର ଏ ଅଞ୍ଚଳ, ଏଠାରେ ପ୍ରତିବର୍ଷ ଜଳାତଙ୍କ ପ୍ରତିଷେଧକ ଟିକା ସବୁ କୁକୁରମାନଙ୍କୁ ଦେଇଦେବା କଥା । ଦିବ୍ୟରଞ୍ଜନବାବୁଙ୍କ ସ୍ୱେଚ୍ଛାସେବୀ ସଂସ୍ଥା ସେଥିପାଇଁ ଜନସଚେତନତା ସୃଷ୍ଟି କରିବାକୁ ଅନୁରୋଧ ।

## ପାଗଳାକୁକୁର/ବିଲୁଆ
## ପୋଷା କୁକୁରକୁ କାମୁଡ଼ିଲେ ଚିକିତ୍ସା ବ୍ୟବସ୍ଥା



କାମୁଡ଼ିବା ଦିନ ବା ପଶୁ କାମୁଡ଼ିବାର ୨୪ ଘଣ୍ଟା ମଧ୍ୟରେ ଦିଆଯିବ ।

୧ମ ଇଂଜେକ୍ସନ - ୨ୟ - ୩ୟ ଦିବସ (ପଶୁ କାମୁଡ଼ିବାର ୩ୟ ଦିବସ), ୩ୟ - ୬ଷ୍ଠ ଦିବସ, ୪ର୍ଥ - ୧୦ମ ଦିବସ, ୫ମ - ୧୪ଶ ଦିବସ, ୬ଷ୍ଠ - ୨୮ଶ ଦିବସ, ୭ମ - ଶେଷରେ ୯୦ ତମ ଦିବସରେ ଅନୁମୋଦିତ ମାତ୍ରାରେ ଦିଆଯିବା ଦରକାର । ଆମ ଡାକ୍ତରଖାନାମାନଙ୍କରେ ଏ ଟିକା ଦିଆଯିବ ।

## କେଉଁ ଟିକା ଦେବେ ?

**୧. ରକ୍ଷାସ୍ରାବ** (Raksharab B.P. Vet) – ଏହା ଗୋଟିଏ ଟିସୁକଲଚର ଟିକା । କୁକୁର, ଗାଈଗୋରୁ, ଛେଳି, ମେଣ୍ଢା ଆଦି ପଶୁଙ୍କୁ ଦିଆଯାଏ । ଚର୍ମ ତଳେ (Sub-Cutaneous) ବା ମାଂସପେଶୀରେ (Intramuscular) ଦିଆଯାଏ ।




ମାତ୍ରା ହେଲା ଏକ ମିଲିଲିଟର (I.C.C.) । ଏଥିପାଇଁ ସାବଧାନତା ଅବଲମ୍ବନ କରିବାକୁ ହୁଏ । ପଶୁଙ୍କର ମଳ ପରୀକ୍ଷା କରି କୌଣସି କୃମି ରୋଗରେ ଆକ୍ରାନ୍ତ ହୋଇଥିଲେ, ପ୍ରଥମେ ତା'ର ଚିକିତ୍ସା କଲାପରେ ଏ ଟିକା ଦିଆଯିବ । ଦୁର୍ବଳ ଓ ଷ୍ଟିରଏଡ଼ ଦିଆଯାଇଥିବା ପଶୁ ଦେହରେ ଏହା ଦିଆଯିବା ଅନୁଚିତ ।

**୨. ରାବିଭ୍ୟାକ୍** (B.P. Ltd.) – ଟିକାଦାନ ପ୍ରଣାଳୀ ରକ୍ଷାସ୍ରାବ ପରି ।

**୩. ବାଇଓମେଡ଼୍** (Bio-Med) – ଏ ଟିକାର ବିଶେଷତ୍ୱ ହେଲା, ଏହା ପଶୁର ଲାଞ୍ଜପାର୍ଶ୍ୱ ମେରୁଦଣ୍ଡର ୧ମ ଓ ୨ୟ ମେରୁଦଣ୍ଡ ସନ୍ଧିରେ (1st and 2nd Caudal Vertebrae) ଦିଆଯାଏ । ତା'ପରେ ୩ୟ ଓ ୪ର୍ଥ ଇଂଜେକ୍ସନ୍, ୩ୟ ଓ ୫ମ ଦିବସରେ ମାଂସପେଶୀରେ ଦିଆଯାଏ । ଏହାଦ୍ୱାରା ସୁଷୁମ୍ନାକାଣ୍ଡ ସିଧାସଳଖ ଟିକା ପାଇବାଦ୍ୱାରା, ଭୂତାଣୁ ମସ୍ତିଷ୍କକୁ ଯିବା ଗତିପଥ ରୋଧ ହୋଇଯାଏ । ଏହା ଅଭିଜ୍ଞ ପଶୁ ଚିକିତ୍ସକଙ୍କଦ୍ୱାରା ଦିଆଯିବା ଉଚିତ ।

ଦିବ୍ୟରଞ୍ଜନବାବୁ ପଚାରିଲେ, ଏ ଟିକା ସରକାରୀ ପଶୁ ଚିକିତ୍ସାଳୟରେ ମିଳେ କି ?

ଡାକ୍ତରବାବୁ କହିଲେ, ନା, ବଜାରରେ ମିଳେ ।

ଜଳାତଙ୍କର ଟିକା ପ୍ରସ୍ତୁତି ସମ୍ବନ୍ଧରେ ଗୋଟିଏ ନୂଆ କଥା ମୁଁ କହୁଛି ଶୁଣନ୍ତୁ ।

ବାଙ୍ଗାଲୋର କୃଷି ବିଜ୍ଞାନ ବିଶ୍ୱବିଦ୍ୟାଳୟର ଜୀବ ପ୍ରଯୁକ୍ତି ବିଜ୍ଞାନ ବିଭାଗର ଅଧ୍ୟକ୍ଷ ଡଃ ଟି.କେ. ସିଦ୍ଧାରମେ ଗୌଡ଼ା ଉଦ୍ଭିଦ ମାଧ୍ୟମରେ ଜଳାତଙ୍କର ପ୍ରତିଷେଧକ ବ୍ୟବସ୍ଥା ଉଦ୍ଭାବନ କରିଛନ୍ତି । ସେ ଜଳାତଙ୍କ ଜୀବାଣୁର ଅନୁବଂଶିକ ଆମ ବାଡ଼ିବଗିଚାରେ ହେଉଥିବା ଫୁଟି ଓ ଲେଟୁସ ଶାଗର ଅନୁବଂଶିକରେ ସଂଯୋଗ କରି ଗୋଟିଏ ନୂଆ ଫୁଟି ଓ ଲେଟୁସ ଶାଗ ସୃଷ୍ଟି କରିଛନ୍ତି । ତାହାକୁ ପରିବା ଆଣ୍ଟିଜେନ୍ (Vegetable antigen) କହନ୍ତି । ପରୀକ୍ଷାଗାର ମୂଷାକୁ ଜଳାତଙ୍କ ରୋଗରେ ଆକ୍ରାନ୍ତ କରି ସେମାନଙ୍କୁ ସେଇ ଫୁଟି ବା ଲେଟୁସ ଶାଗ ଅନୁମୋଦିତ ମାତ୍ରାରେ ଖାଇବାକୁ ଦେଇ ମୂଷାମାନଙ୍କୁ ଜଳାତଙ୍କ ରୋଗମୁକ୍ତ କରିଛନ୍ତି । ଅନ୍ୟ ପଶୁ ଓ ମନୁଷ୍ୟଙ୍କ ଦେହରେ ତା'ର ପରୀକ୍ଷା ହେବାକୁ ଅଛି । ଆଶା କରାଯାଏ, ଭବିଷ୍ୟତରେ ଏହି ପରିବା ଆଣ୍ଟିଜେନ୍, ବୁଲାକୁକୁର, ଅନ୍ୟାନ୍ୟ ପଶୁ ଓ ମନୁଷ୍ୟଙ୍କୁ ଜଳାତଙ୍କରୁ ରକ୍ଷା କରିପାରିବ ।

## ଅନ୍ୟାନ୍ୟ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ

ଉଭୟ ଡାକ୍ତର ସମସ୍ତଙ୍କୁ ପଚାରିଲେ, ଜଳାତଙ୍କ ରୋଗ କ'ଣ, ତା'ର ଲକ୍ଷଣ, ଚିକିତ୍ସା ଓ ପ୍ରତିଷେଧକ ବ୍ୟବସ୍ଥା ସମ୍ବନ୍ଧରେ ସବୁକଥା ଆପଣମାନଙ୍କୁ ଶୁଣାଇଲୁ । ଆଉ କାହାର କ'ଣ ସନ୍ଦେହ ଅଛି ପଚାରନ୍ତୁ ।

ସରପଞ୍ଚବାବୁ - ଆଜ୍ଞା ଦୁଧିଆଳୀ ଗାଈକି ପାଗଳାବିଲୁଆ/କୁକୁର କାମୁଡ଼ିଲେ ତା'ର କ୍ଷୀର ଖାଇବା କି ?

ଡାକ୍ତରବାବୁ - ମୁଁ କହିଛି, ଜଳାତଙ୍କ ଜୀବାଣୁ ଉତ୍ତାପ ପାଇଲେ ମରିଯାଏ । କ୍ଷୀରକୁ ଗରମ କରି (ଫୁଟାଇ) ଖାଇଲେ କିଛି ଅସୁବିଧା ନାହିଁ । କଞ୍ଚା କ୍ଷୀରରେ ଜୀବାଣୁ ମିଳନ୍ତି ବୋଲି ମୁଁ କହିଛି ।

ଦିବ୍ୟରଞ୍ଜନବାବୁ - ମନୁଷ୍ୟକୁ ଜଳାତଙ୍କ ରୋଗର ଲକ୍ଷଣ ପ୍ରକାଶ ପାଇଲେ ସେ ଚିକିତ୍ସାଦ୍ୱାରା ବଞ୍ଚିପାରିବ କି ?

ଡାକ୍ତରବାବୁ - ଆଗରୁ ମୁଁ କହିଛି, ବଞ୍ଚନ୍ତି ନାହିଁ । ତେବେ ଜଣାଯାଇଅଛି, ଆମେରିକାରେ ୩ ଜଣ ଜଳାତଙ୍କ ରୋଗୀ ଚିକିତ୍ସା ବଳରେ ବଞ୍ଚିଛନ୍ତି । କିନ୍ତୁ ସେ ଚିକିତ୍ସା ବଡ଼ ଅର୍ଥକରୀ । ଆମ ଦେଶରେ ଅବଶ୍ୟ ଦିଲ୍ଲୀସ୍ଥିତ ସର୍ବଭାରତୀୟ ଭେଷଜ ବିଜ୍ଞାନ ପ୍ରତିଷ୍ଠାନରେ ଗୋଟିଏ ରୋଗୀ ବଞ୍ଚିଛି ବୋଲି ଜଣାଯାଇଅଛି ।

ସରପଞ୍ଚବାବୁ - ଆମ କବିରାଜେ ଥାଳି ଚଳାଇ ଓ ଜଡ଼ିବୁଟି ସାହାଯ୍ୟରେ ଅନେକ କୁକୁର/ବିଲୁଆ କାମୁଡ଼ା ଲୋକଙ୍କୁ ଭଲ କରିଛନ୍ତି ।

ଡାକ୍ତରବାବୁ - ତେବେ ତୁମ ଗ୍ରାମର ମାଗୁଣିଆକୁ କାହିଁକି ଭଲ କରିପାରିଲେ ନାହିଁ ? କୁକୁର/ବିଲୁଆ କାମୁଡ଼ିଲେ ଯେ ସମସ୍ତଙ୍କର ଜଳାତଙ୍କ ରୋଗ ହୋଇଯିବ, ତାହା ନୁହେଁ । କୁକୁର, ବିଲୁଆ ଅନେକ ସମୟରେ ମନୁଷ୍ୟ ଲୁଗା ମିଶା କାମୁଡ଼ି ଦିଅନ୍ତି । ସେଥିରେ ଚମରେ କ୍ଷତ ହୋଇ ନ ଥାଇପାରେ । ଜଳାତଙ୍କ ରୋଗର ଲକ୍ଷଣ ପ୍ରକାଶ ପାଇଲା ପରେ ତାହା କେବେହେଁ ଭଲ ହୋଇପାରେ ନାହିଁ । ସେଥିପାଇଁ ପଶୁ କାମୁଡ଼ିଲା ପରେ ପରେ ଶୀଘ୍ର ଚିକିତ୍ସା ବ୍ୟବସ୍ଥା କରିବା ଆବଶ୍ୟକ ।

ସରପଞ୍ଚବାବୁ - ମୂଷା, ନେଉଳ ଓ ମାଙ୍କଡ଼ କାମୁଡ଼ିଲେ ଜଳାତଙ୍କ ଟିକା ଦେବା ଦରକାର କି ?

ଡାକ୍ତରବାବୁ - ଟିକା ଦେଇଦେଲେ ନିରାପଦ ।

ଦିବ୍ୟରଞ୍ଜନବାବୁ - ଯେଉଁ କୁକୁରକୁ ଜଳାତଙ୍କ ପ୍ରତିଷେଧକ ଟିକା ଦିଆଯାଇ ଅଛି, ସେ କୁକୁର କାହାରିକି କାମୁଡ଼ି ଦେଲେ କ'ଣ କରିବା ?

ଡାକ୍ତରବାବୁ - ଯେଉଁ ପ୍ରତିଷେଧକ ଟିକା ଦିଆଯାଉଅଛି, ତା'ର ଦ୍ରବ୍ୟଗୁଣ ଠିକ୍ ଥିଲା କି ନାହିଁ ଆମେ ଜାଣି ନାହୁଁ । କାରଣ ରେଫ୍ରିଜେରେଟର (Refrigerator)ରେ ଠିକ୍ ୨° ରୁ ୮°

ସେଲସିଅସ୍ ମଧ୍ୟରେ ଟିକା ସଞ୍ଚିତ ହୋଇ ନ ଥିଲେ ତା'ର ଗୁଣ କମିଯାଇଥାଏ । ସେ ଦୃଷ୍ଟିରୁ ଜଳାତଙ୍କ ଟିକା ଆରମ୍ଭ କରିଦେବ । କୁକୁରକୁ ବାନ୍ଧିରଖି ୧୦ଦିନ ପରେ ଯଦି ସେ ନ ମରେ, ତା'ହେଲେ ଯେତିକି ମାତ୍ରା ଦେଇଥିବେ, ସେତିକି ଦେଇ ଟିକା ବନ୍ଦ କରିଦେବା ଉଚିତ । କାରଣ କେତେକ ଜାଗାରେ ଦେଖାଯାଇଅଛି କୁକୁର ବଞ୍ଚିଥିବା ଅବସ୍ଥାରେ ତା' ଦେହରେ ଜଳାତଙ୍କ ଭୂତାଣୁ ଥାଏ । ଅବଶ୍ୟ ଏହା କ୍ୱଚିତ୍ ଦେଖାଯାଇଅଛି ।

ସଭା ଭଙ୍ଗ ହେବା ପୂର୍ବରୁ ସେଇ ବାଟ ଦେଇ 'ରାମ ନାମ ସତ୍ୟ ହେ' ଶବ୍ଦ ଶୁଣାଗଲା । ଦେଖୁ ଦେଖୁ ମାଗୁଣିଆର ଶବ ଯାଉଥିବାର ଦେଖି ସମସ୍ତେ ବ୍ୟସ୍ତ ଓ ବିବ୍ରତ ହେଲେ । ଡାକ୍ତରବାବୁମାନେ କହିଲେ, ଦେଖିଲେ ତ, ଦିବ୍ୟରଞ୍ଜନବାବୁ ମାଗୁଣିଆକୁ ଡାକ୍ତରଖାନାକୁ ନେବାକୁ କହୁଥିଲେ । ତାଙ୍କ କଥା କେହି ମାନିଲେ ନାହିଁ । କ'ଣ ହେଲା ଦେଖିଲେ ତ ?

ସରପଞ୍ଚବାବୁ କହିଲେ, ତା'ର ପରମାୟୁ ପୂରିଲା ।

ଗ୍ରାମବାସୀମାନେ ସମସ୍ତେ ଡାକ୍ତରବାବୁମାନଙ୍କୁ ବଧାଇ ଦେଲେ । ସମସ୍ତେ ଶପଥ ନେଲେ ଯେ, କୁକୁର, ବିଲୁଆ କାମୁଡ଼ିଲେ ଆଉ ଭୁଲରେ କବିରାଜ ପାଖକୁ ଯିବେ ନାହିଁ । ସେ ସବୁ ଅନ୍ଧବିଶ୍ୱାସ ସମସ୍ତେ ସ୍ୱୀକାର କଲେ । ସମସ୍ତେ ଡାକ୍ତରଖାନାରେ ସେଠାରେ ଡାକ୍ତରବାବୁଙ୍କର ପରାମର୍ଶ ନେଇ ଚିକିତ୍ସା କରିବେ । ପୋଷା କୁକୁରମାନଙ୍କୁ ପ୍ରତିଷେଧକ ଟିକା ଦେଇଦେବେ । ବୁଲାକୁକୁରମାନଙ୍କୁ କୌଣସି ପ୍ରକାରରେ ନିୟନ୍ତ୍ରଣ କରିବେ । ପଶୁଡାକ୍ତରଖାନାକୁ ନେଇ ଜନ୍ମ ନିୟନ୍ତ୍ରଣ କରି କୁକୁରଙ୍କର ବଂଶ ବୃଦ୍ଧି ରୋକିବାରେ ବ୍ୟବସ୍ଥା କରିବେ ।

ସମସ୍ତେ ଏକସ୍ୱରରେ କହିଲେ ଡାକ୍ତରବାବୁଙ୍କର ଜୟ ହେଉ । ଦିବ୍ୟରଞ୍ଜନବାବୁଙ୍କର ଜୟ ହେଉ ।

ସଭା ଭଙ୍ଗ ହେଲା ।

---